# ଆତ୍ମଦାନ

ଶ୍ରୀ ହରେକୃଷ୍ଣ ମହତାବ

ପ୍ରକାଶକ :—

ଷ୍ଟୁଡେଣ୍ଟସ୍ ଷ୍ଟୋର୍

ବ୍ରହ୍ମପୁର : କଟକ ।

# ପାତ୍ର ପରିଚୟ

ସମ୍ରାଟ—ମାୟାପୁରର ସମ୍ରାଟ

ସାମ୍ରାଜ୍ଞୀ—ତାଙ୍କର ପତ୍ନୀ

ସନ୍ୟାସୀ—ସୁବର୍ଣ୍ଣ ନଗରର ସ୍ୱାଧୀନତା
ଆନ୍ଦୋଳନକାରୀ ନେତା ।

ମଞ୍ଜରୀ—ତାଙ୍କର ପଟ୍ଟ ଶିଷ୍ୟା ।

ବିଜୟକୁମାର—ସୁବର୍ଣ୍ଣ ନଗରର ସମ୍ରାଟଙ୍କ ପ୍ରତିନିଧି ।

ମିହିର—ତାଙ୍କର ପୁତ୍ର

ତାରା—ତାଙ୍କର ପତ୍ନୀ

ଗ୍ରାମବାସୀ—ସାହୁପୁଅ, ଦାସପୁଅ, ମହାପାତ୍ରେ,
ପଧାନେ ।

---

# ସମ୍ରାଟ ଓ ବିଜୟକୁମାର

ସମ୍ରାଟ:—ଇହୁହୁର ସେହି ରାଜ୍ୟ ସମ୍ପୂର୍ଣ୍ଣ ପୃଥକ,
ଭାଷାରେ ଧର୍ମରେ ତଥା ଆଚାରେ ବେଶରେ,
ଆମର ଏ ରାଜ୍ୟ ସଙ୍ଗେ ନାହିଁ ସାମଞ୍ଜସ୍ୟ
ତଥାପି ହେଲେ ସେ ରାଜ୍ୟର କୌଣସି ବିଷୟେ ॥
ଥିଲି ମୁଁ ଅବଦ୍ଧ କ୍ଷୁଦ୍ର ଏ **ମାୟାପୁରୀରେ** ।
ଆକାଶର ଏକ କୋଣେ ମେଘ ଖଣ୍ଡ ପରି ।
ଅନୁକୂଳ ସମୀରଣେ ଯଥା ସେ ପ୍ରସାରି,
ବ୍ୟାପିଯାଏ ସୁଦୂର ଆବଦ୍ଧ ବିସ୍ତୃତ ଆକାଶେ,
ତଥା ଅନୁକୂଳ ବିଧି ହେବାରୁ ସହାୟ,
**ସୁବର୍ଣ୍ଣ ନଗର** ହେଲା ଆଜ ମୋ ଆୟତ୍ତ ॥
ନୁହେଁ ମୋର ରାଜ୍ୟ ଖାଲି ମାୟାପୁରୀ କ୍ଷୁଦ୍ର,
ସୁବର୍ଣ୍ଣ ନଗର ମଧ୍ୟ ସାମ୍ରାଜ୍ୟ ମୋହର ।
ନ ଥିଲା ଲାଳସା ଯେତେ ରାଜ୍ୟ ଅଧିକାରେ,
ଆପେ ଆପେ ରାଜ୍ୟ ଆସି ହେଲା କରଗତ ।
ଈଶ୍ୱର ବିଧାନ ଛଡ଼ା କ କହିବ ଆଉ,
ସେ ବିଷୟରେ କରିବ ମୁଁ କର୍ତ୍ତବ୍ୟ ପାଳନ ।
ଲକ୍ଷ୍ୟକୁ ମୁଁ ମୂକ ବଧିର ଅଙ୍ଗୁଳି ନିର୍ଦ୍ଦେଶ—
ସୁବର୍ଣ୍ଣ ନଗର ହେଉ ଅତି ସମୁଜ୍ଜ୍ୱଳ,
ନଭୋଦିତ ମାୟାପୁରୀ ହିମାଂଶୁ କିରଣେ,
ହୁଏ ଯଥା ସମୁଜ୍ଜ୍ୱଳ ପଙ୍କ ନିଶିଥୀନ ॥
ନ୍ୟାୟର ଶାସନ ତହିଁ କରି ପ୍ରବର୍ତ୍ତନ,

କରିବାକୁ ହେବ ନବ ସଭ୍ୟତା ବିସ୍ତାର ।
ସେଥିପାଇଁ ଲୋଡ଼ା ତବ ବିଜୟକୁମାର,
କରିବାକୁ ସୁସମ୍ପନ୍ନ ବିଧିର ନିର୍ଦ୍ଦେଶ ।
ବିଜୟକୁମାର—ରାଜାହିଁ ଈଶ୍ୱର ରାଜା ପାର୍ଥିବ ଦେବତା,
ଶାସ୍ତ୍ରର ବଚନ ଏହା ନୋହିବ ଅନ୍ୟଥା ।
ଦେବେ ଯେ ଆଦେଶ ରାଜା ପ୍ରଜାଙ୍କ ଶାସନେ,
ହୋଇବ ଗୃହୀତ ତାହା ବିନା ବାକ୍ୟ ବ୍ୟୟେ ।
ସମ୍ରାଟ—ସାଧୁ ତବ ବୁଦ୍ଧି ପ୍ରିୟ ବିଜୟକୁମାର,
କହୁଛି ମୁଁ ଅନିଚ୍ଛୁକ ସେ ଭାର ବହନେ,
ବୃଦ୍ଧିରେ ଅପର ରାଜ୍ୟ ଶାସନ ଦୁର୍ବହ,
ତବ ହସ୍ତେ ଅର୍ପିବାକୁ ଏକାନ୍ତ ମୋ ଇଚ୍ଛା ।
ଆକାଶେ ତପନ, କିନ୍ତୁ ତା' କିରଣ ଜାଲ,
ସୁଦୂର ଧରଣୀବକ୍ଷେ ଯୋଗେ ପ୍ରତିଫଳ,
କରୁଛି ଆଲୋକ କେତେ ଅନ୍ଧାର ଗହ୍ୱର,
ଅନ୍ୟଥା ତିମିର ନାଶେ ଅସହାୟ ସୂର୍ଯ୍ୟ ।
ସେହିପରି ହେଉ ମୋର ପ୍ରଭା ପ୍ରତିକ୍ଷିପ୍ତ,
ତବ ଯୋଗେ ସବୁ ସ୍ଥାନେ ସୁବର୍ଣ୍ଣନଗରେ ।
ବିଜୟକୁମାର—ଶିରୋଧାର୍ଯ୍ୟ ଆଜ୍ଞା ତବ ରାଜରାଜେଶ୍ୱର,
ବହୁ ଜନ୍ମଫଳ ସିନା ଏହି ଅଧିକାର,
ହେବାକୁ ଆଦେଶବହ ସ୍ୱୟଂ ସମ୍ରାଟଙ୍କ,
ସ୍ଥାପିବାକୁ ନିଜ ଦେଶେ ଧର୍ମ୍ମର ଶାସନ ।
ସମ୍ରାଟ—ମହତୀ ଏ ଇଚ୍ଛା ତବ ଜନନୀ ପୁରୁଷ,
ନିଜ ଦେଶ ସେବା ବ୍ରତ କରୁଛ ଗ୍ରହଣ,
ସ୍ୱର୍ଗ ଠାରୁ ବଳି ପର ଆପଣା ସ୍ୱଦେଶ,

ଯେଉଁ ଲୋକେ ତା' ସେବା କରନ୍ତି ଧନ୍ୟ ତା ଜୀବନ ।
ସ୍ୱଦେଶ ତୁମର ନୁହେଁ ଅମର ଶାସନ,
ବିଧିର ବିଧାନ ତାହା, ନମିତ୍ତ ମୁଁ ମାତ୍ର ।
ଏସ ଶାସନ ତବ ଯୋଗେ ହେଲେ କାର୍ଯ୍ୟକାରୀ,
ଦେଶ ସେବା ହେବ, ତେବେ ତୋଷିବ ବିଧାତା ।
କରୁଛି ଘୋଷଣା ତେବେ ତୁମେ ପ୍ରତିନିଧି ।
ମାଗୁଥିବି ସମ୍ରାଟଙ୍କ ସୁବର୍ଣ୍ଣ ନଗରେ ?
ରାଜକୁମାର—ପାଳୁଛି ଆଦେଶ ପ୍ରଭୁ ବିନତ ମସ୍ତକେ ।
ଏ ଶରୀର ତବ ପଦେ କଲି ସମର୍ପଣ ।
ସମ୍ରାଟ—କେବଳ ଶରୀର ନୁହେଁ ରାଜକୁମାର,
ସାଧାରଣ ଭୃତ୍ୟ କରେ ଶରୀର ନିୟୋଗ ।
ପ୍ରତିନିଧି ପଦେ ଯେଣୁ ହେଲ ବିନିଯୁକ୍ତ,
ଅର୍ପିବାକୁ ହେବ ସବୁ ଯା'ଅଛି ତୁମର,
ଶରୀର, ବଚନ, ମନ ତଥା ଅନ୍ତରାତ୍ମା ।
କରିବାକୁ ହେବ ସବୁ ସମର୍ପଣ ମୋତେ,
ତେବେ ଯାଇ ହେବ ପୂର୍ଣ୍ଣ ଆଦେଶ ପାଳନ ।
ରାଜକୁମାର—ଅରପୁଛି ସବୁ ପ୍ରଭୁ ! ସ୍ୱଦେଶ କଲ୍ୟାଣେ,
ତବ ପଦେ ହୋଇ ତବ ଚେଷ୍ଟା ଆଜ୍ଞାବହ,
ଉଠାଇବି ନିଜ ଦେଶ ସହ୍ୟ ଉଚ୍ଚ ସ୍ତରେ,
ବିରାଜନ୍ତି ଯହିଁ ସବୁ ସଭ୍ୟଜନପଦ ।
ସମ୍ରାଟ—ସମୀଚୀନ ତବ ଚିନ୍ତା ସ୍ୱଦେଶ-ଗୌରବ,
କରିନାହିଁ ଦେଶପାଇଁ କେହି ଏତେ ତ୍ୟାଗ ।
କରନ୍ତି ସକଳେ ଖାଲି ସ୍ୱଦେଶ ବଡ଼ାଇ,
ଭୁଲିଯାନ୍ତି ସେଇଥିରେ ନିଜ ଦୋଷଯାକ

ଦୋଷ ଦେଖି ପ୍ରତିକାର ଲୋଡ଼େ ଯେ ମନୁଷ୍ୟ,
ସେହି ସିନା ବାସ୍ତବିକ ସ୍ୱଦେଶ-ସେବକ ।
ସଭ୍ୟତା ସୋପାନ ତଳେ ସୁବର୍ଣ୍ଣ-ନଗର,
ପଡ଼ିଛି ଜଗତେ ହୋଇ ହାସ୍ୟାସ୍ପଦ ମାତ୍ର ।
ହେଲଣି ଅନ୍ୟତ୍ର ଆସି ପ୍ରଗତି-ମଧ୍ୟାହ୍ନ,
ଅନୁଦିତ ତବ ଦେଶେ ଉନ୍ନତି-ତପନ ।
ବହୁକାଳ ବହୁଶ୍ରମ ଲାଗିବ ସେ କାର୍ଯ୍ୟେ,
ନେଲ ଯା' ହାତକୁ ଆଜ ସ୍ୱଦେଶ-କଲ୍ୟାଣେ ।
ନ ହେବ ଅଧୀର କେବେ ରଖିବ ବିଶ୍ୱାସ
ଯାଉଥିବ କରି ଯାହା ଦେବି ମୁଁ ଆଦେଶ ।
ଜୟକୁମାର—ଅଟେ ଭାଗ୍ୟବାନ ମୋର ସୁବର୍ଣ୍ଣ ନଗର,
ପାଇଛି ଯେ ପ୍ରଭୁ ପଦେ ମାୟାପୁର ରାଜା ।
ଅଟେ ଭାଗ୍ୟବାନ ଏହି ପ୍ରଭୁଙ୍କ କିଙ୍କର,
ପାଇଛନ୍ତି ଯେ ହେତୁ ଦେବ-ଦୁର୍ଲ୍ଲଭ ସୁଯୋଗ,
କରିବାକୁ ଦେଶ ସେବା ତଥା ରାଜ ସେବା,
ଦୁଇଟି ମହତ କର୍ମ୍ମ, ମନୁଷ୍ୟ ଜୀବନେ ।

# ଗ୍ରାମବାସୀଗଣ (ହାଟ)

ସାହୁପୁଅ—ଶୁଣିଛ ନାଁ, ମହାପାତ୍ରେ, ନୂତନ ଖବର,
ମାୟାପୁରୀ ବାଲା ରାଜା ସୁବର୍ଣ୍ଣ ନଗରେ
ହେଲେଣି, ଯାଉଛୁ ଦିଆ ନାଗରୀ ସବୁଠିଁ,
ହୋଇଛୁ ବେବର୍ତ୍ତା ସେହି କୁଳାଙ୍ଗାର ମୂର୍ଖ,
ଯୁଦ୍ଧ ବେଳେ ଛାଡ଼ିଦେଇ ନିଜ ପକ୍ଷ ଦେହୁ,
ମିଶିଲା କୌଶଳେ ଯାଇ ମାୟାପୁରୀ ପକ୍ଷେ,
କହାଇଲା ସବୁ ଭେଦ ଯେ ଅଣବିଶ୍ୱାସୀ,
ହାରିଗଲା ଯାହା ଯୋଗୁଁ ସୁବର୍ଣ୍ଣ ନଗର ।
ମହାପାତ୍ରେ—ଛାଡ଼ ସେ ବିଷୟ ଭାଇ ପକା ଅନ୍ୟ କଥା,
ଶୁଣା ହେଲା କେତେ ଜମି ବାକି ଅଛି କେତେ,
ଭଲ ଅବା ମନ୍ଦ ହେବ ଏଥର ପାଳକ,
କି ଅଛି ଆମର ରାଜରାଜୋଡ଼ା ଖବରେ ।।
ଯେ ହେବ ମୁଲକ ରାଜା ନେବ ସେ ଖଜଣା,
କେହି କି ଛାଡ଼ିବ କର ଯେ ହେଉ ମାଲିକ ।
ଦାସ ପୁଅ—ଶୁଣାଯାଏ ଦୟାବନ୍ତ ବଡ଼ ନୂଆ ରାଜା,
ପରଜାଙ୍କ ସୁଖ ଦୁଃଖ ଲାଗେ ଭାରି ତାଙ୍କୁ,
ଦେଖୁନାହୁଁ ଗୁରୁଆଡ଼େ ତାହାର ନମୁନା,
ଖୋଲିଲାଣି କେତେ କେତେ ବସ୍ତୁର କାରବାର,
ବଡ଼ ସାନ ସବୁ ଯେଁଠି ସମସ୍ତେ ସମାନ,
ପାଇବେ ବସ୍ତୁର ସେହି ନୂଆ ରାଜ ଦଣ୍ଡ ।।
ଧରିନେଇ ମାରୁଥିଲା ଆମ ମକଦମ,

ବହିଲାଣି କାଠ ହୋଇ ଘଟେ ସେ ବସ୍ତୁହି ॥

ପଧାନେ—ଯେତ ଦାସପୁଅ ଏତ ଅତ ସତ କଥା,
ଶୁଣା କଥା ନୁହେଁ ଆଖି ଦେଖିବା ଘଟଣା,
ଗଡ଼ି ଯାଇ ଜମିଦାର ଆମ ଗାଁ ମାଲିକ,
ମାରୁଁ ମାରୁଁ ମାରିଦେଲେ ପରଜା ଜଣଙ୍କୁ,
ଆସିଲା ହୁକୁମ ତେଣୁ ଦାଣ୍ଡ ନେବା ପାଇଁ,
ଛନ୍ଦାହୋଇ ଜମିଦାର ଗଲେ କଳାପାଣି ।
ରାଜ୍ୟ ସାରା ଜାରି ଏବେ ବଡ଼ କଟକଣା,
ନ କରିବେ ଗୋରି ନାରୀ ଉକାଏତ କେହି,
ନ କହିବେ କେହି କାଙ୍କୁ କଡ଼ା କରି ପଦେ,
ନୋହିଲେ ହୋଇବ ବନ୍ଧା ହୁକୁମ ଏପରି,
ମାଯ୍ପୁରୀ ରାଜକରେ ଏକା ସାଥି ଦଣ୍ଡା,
ଛେଳି ବାଘ ଏକାଘାଟେ ପିଅ ହେବେ ପାଣି ।

ସାହୁପୁଅ—ନ ବୁଝି ନ ସୁଝି ବକୁ ଏଣୁ ତେଣୁ ଗୁଡ଼ିଏ,
ବୁଝିହୁନା କଣ୍ଠ କଥା ଗହରକୁ ଯାଇ,
ସୁବର୍ଣ୍ଣ ନଗର ଆମ କେଡ଼େ ବଡ଼ ରାଜ୍ୟ,
ଆମ ରାଜ୍ୟ ଆମ ରଜା ବୁଝନ୍ତେ ଯେପରି,
ବୁଝିବେକ ସେହିପରି ପରଦେଶୀ ରଜା ?
ବହିବ ତାଙ୍କର ମନ ତାଙ୍କ ରାଜ୍ୟ ଆଡ଼େ ।

ପଧାନେ—ବୁଝିନାହିଁ ମୁଁ, ଆଜ ବୁଝିଲୁ ତୁ ସବୁ,
ହାଟ କରି ବୁଲେ ମୁହିଁ ଭୁତ ବହୁ ଘରେ,
ନ ଆସିବେ ଏ ରାଇଜେ ମାଯ୍ପୁରୀ ରଜା,
ଚଳାଉଛି ତାକୁ ଯେଣୁ ନିଜ ରାଜ୍ୟ ବୁଝା ।
ବୁଝିବେ ଏ ରାଜ୍ୟ ଏହି ରାଜ୍ୟ ଲୋକ ଏକା

ସେଥିପାଇଁ ଶାଉଡଦେବା ବଜାପୁଙ୍କ ଶିରେ ।
ମହାପାତ୍ରେ—ଦେଖୁଛୁ ମୁଁ ତୁମେ ସବୁ ବଡ଼ ଅପୁରୁଖା,
ଜାଣନାହିଁ ଗତ ବର୍ଷ ଘର କରୁଣାର ।
ଉଠାଏ ବାଦଲ ଯେବେ ମାରେ ଘଡ଼ ଘଡ଼ି,
ଝୁଲିପଡ଼େ କଳାମେଘ ବରଷା ଆଗରୁ,
ବୁଝି ଥିବା ବାଟୋଇ ଯେ ରହିଯାଏ ଦଣ୍ଡେ,
ନ ମିଳିଲେ ଗାଁ ଗଣ୍ଡା, ଗଛ ଆଶ୍ରା କରି ।
ଦେଖେ ସେ ମେଘର ଗତ ପୁଣି ଚାଲେ ବାଟେ,
ହିନସ୍ତା ହୁଏ ସେ ମୂର୍ଖ ନ ମାନେ ଯେ କଷ୍ଟ ।
ସେହିପରି ନୂଆ ରଜା ନୂତନ ହୁକୁମ,
ଜରୁରୀ ଜାରି ଯେବେ, ରହିଯାଅ ଦଣ୍ଡେ,
ଠଉରାଅ ଗତ ବିଧି ଗୁରୁଆଡ଼େ ଚାହିଁ ।
ତା' ପରେ କହିବ କଥା ସୁବଧା ବୁଝିବ ।
ନ ହେଲେ ପ୍ରମାଦ ଅଛି ହେଲେ ତଡ଼ବଡ଼,
କିଏ ଜାଣେ ଏଠା କଥା ଯାଜେ ଇଦ ସେଠି,
କି ଦଶା ଘଟିବ ଆମ ନୂଆ ରାଜକରେ,
ଠିକ କିଛି ନାହିଁ ଜଣା ନୂଆ ନଈ ପରି ।
ଶୁଣି ଯିବ ସବୁ କଥା ନ କହିବ କିଛି,
କହିଲେ ସରିଲା ସବୁ, ଏହି ଗୁରୁ ବାକ୍ୟ ॥
ସାହୁପୁଅ—ଯା' କହିଲ ମହାପାତ୍ରେ କଥା ଅଟେ ସତ,
କି ଅଛି ଅବା ଆମର ହେଲେ କିଏ ରଜା,
ପଧାନେ—କହୁଥିଲ, ଏହି ସାରୁ ନୂଆ ରଜା ମନ୍ଦ,
ଅଟେ ଭୁଟ୍ଟା ଲୋକ ଭଲ ଉ ଚମକାଇ,
ପୁଣି କପାଁ ଗିଳଦେଉ ନିଜ କଥା ନିଜେ,

ନାଞ୍ଚ ଜାକ ଦେଖାଉ ତୁ ଦୁଇପାଟି ଦାନ୍ତ ।
ସାହୁପୁଅ—ଚୁପ୍ ରହ, କଥା କହ ମୁହଁ ତୋ ସମ୍ଭାଳି,
ନୋହିଲେ ଦେଖିବୁ ଏଠି ଉଡ଼ିଯିବ ମୁଣ୍ଡ,
ଛୋଟ ମୁହେଁ ବଡ଼ି ବଡ଼ି କହ କେତେ କଥା,
ଜାଣୁନ କ୍ଷମତା ମୋର ଏ ହାଟରେ କେତେ ?
ପଧାନେ—ରଖିଦେ କ୍ଷମତା ତୋର ପେଡ଼ି ବନ୍ଦକରି
ଦଉଛୁ ଖଣ୍ଡିକରେ କେତେଣେ ଯିବୁ ଉଡ଼ି ।
ଯାଉଛୁ ଭରୁଣି ମୁହିଁ କରିବ ସ୍ଵାର୍ଥ ।
କହୁଥିଲ୍ଲ ସାହୁପୁଅ ରାଜାଙ୍କ ବିରୋଧ ॥
ମହାପାତ୍ରେ—ଶାନ୍ତହୁଅ ପଧାନେ ହେ ଧକା ଅନ୍ୟ କଥା,
କରୁଁ କରୁଁ ଖୁସି ଗପ ବଢ଼ିଗଲା କଥା ।
ଝିମିଟି ଖେଳରୁ ମହା ଭାରତ ହେଉଛି,
ଛୋଟ କଥା ବଡ଼ କର ଅକାରଣେ ମାତ ।
ପଧାନେ—ଦେଖୁଛନ୍ତି ମହାପାତ୍ରେ ଏହାର ଗାରିମା,
ରାଜଦ୍ରୋହ କଥା କହି ଦେଖାଉଛି ଆଖି,
ସତେ କି କରିଛି ଧର୍ମ ଯା ଖାନା ବାଡ଼ିରେ ।
ମନେନାହିଁ, ଆଗ ଯୁଗ ଖାଇଲାଣି ଚାପ ॥
ସାହୁପୁଅ—ଜାଣୁ ତୁ କହୁଛୁ କଥା କାହା ହାଟେ ବସି,
ମନ କଲେ ଦେଇ ପାରେ ଉଠାଇ ଏଇଠୁଁ ।
ମହାପାତ୍ରେ—ରତ୍ନାକର ସାହୁପୁଅ ବଢ଼ା ନାଁ କଥାକୁ,
ବନ୍ଦକର ଏବେ ଭଲ, ପଡ଼ୁ ଅନ୍ୟ କଥା,
ନୋହିଲେ ଯାଉଛୁ ଉଠି ମୋ ନିଜ କାମରେ,
ବୁଝ ତୁମେ ତୁମ କଥା ଅମାନିଆ ଯାକ ।

ପଧାନେ— ଯାଉଛୁ ମୁଁ ମହାପାତ୍ରେ ଉଠି ଏହିକ୍ଷଣି,
ନ କରିବ ହାଣ୍ଟ ଆଜ ଯାଉଛୁ ଘରକୁ,
ଦେଖିବ, କ ବଡ଼ଲୋକ, କେତେଡ଼ ହାଣ୍ଟ ଯ୍ୟାର,
ଭାବୁଥିବ ମନେ ମନେ ଆଉ ଥୋଡ଼ାଦିନେ ।

( ଗୃହଗଲ )

ମହାପାତ୍ରେ—ନ ମାନିଲ ସାହୁପୁଅ ସାନକୁହା ମୋର,
ଭିଆଇଲ କଲ ସିନା ତୁଚ୍ଛା ମିଛଛାଟର ।
ବହୁଲୋକ ଏ ରାଜ୍ୟର ଗୃହ୍ନିଁବାକୁ ସିନା,
ମାୟାପୁରୀବାଲା ହେଲେ ରଜା ଏ ରାଜ୍ୟର
ଯେସର ବରଷା ପାଇ ଫୁଟି ଉଠେ ଛତୁ,
ଯେଉଁଠି ସେଇଠି ପଶୁ ସଡ଼ା ମୃତ୍ତିକାରୁ
ସେହିପରି କେତେ ଲୋକ ହେବେ ପରବଳ,
ଯାହାଙ୍କୁ ଇତର ବୋଲି ଗଣୁଥିଲେ ଆଗେ ।
ସହି ସମ୍ଭାଳି କରେ କାମ ବୁଦ୍ଧି ଯା'ର ଅଛୁ,
ନୋହିଲେ ଆସିବ ମାଡ଼ ଅଦିନ କୁହୁଡ଼ି ।
ସାହୁପୁଅ—ସତକହ, ମହାପାତ୍ରେ, କହୁ ମୁଁ କହୁଛି,
ଅକାରଣେ କହିଲ ସେ ମୁହଁ ଚୁଟି ଆଗେ,
କାହୁ ଯା' କରିବ, ହେଉ ଯା' ହେବାର ହେଉ,
ତାହା ବୋଲି ଏଇଠାକୁ ନଇଁବ ନାଁ ମୁଣ୍ଡ ।

# ବିଜୟକୁମାର ଓ ତାରା

ବିଜୟକୁମାର—ପଡ଼ିଥିଲୁଁ ସମାଜର କେଉଁ ନିମ୍ନସ୍ତରେ,
ଅଜଣା ଅଶୁଣା, ସହି ଉପେକ୍ଷା ଲାଞ୍ଛନା,
ଆସିଲି ସୁଦେଶ ଯେବେ ହେଲି ମୁଁ ପ୍ରଧାନ,
ସୁବର୍ଣ୍ଣନଗରେ ଆଜ ରାଜପ୍ରତିନିଧି,
ଗୌରବ ଶିଖରେ ଉଠି ଅନାଇ ତଳକୁ,
ଗୃହିଁ ଦେଖେ ସେହିମାନେ ଅନୁଗ୍ରହ ପ୍ରାର୍ଥୀ,
ଯେଉଁମାନେ କରୁଥିଲେ ମୋତେ ତୁଚ୍ଛଜ୍ଞାନ,
ଆଭିଜାତ୍ୟ, ଅର୍ଥ ଅବା ବୁଦ୍ଧି ଅଭିମାନେ ।
ପ୍ରାଂଶୁତମ ପୁରୁଷର ଶିର ଆଜ ନତ,
ମୋହର କ୍ଷମତା ଆଗେ, ସର୍ବଶ୍ରେଷ୍ଠ ମୁହିଁ ।
ନାହିଁ କି ତୁମର ଅଂଶ ମୋର ଏ ଗୌରବେ,
ନୁହେଁକି ପ୍ରତିଷ୍ଠା ମୋର ତବ ସ୍ୱସମ୍ପତ୍ତି ?
ତଥାପି କାହିଁକି ମ୍ଳାନ ଦିଶେ ଗୋ ବଦନ,
ନହୁଏ ଅଧର ତବ ଗରବେ ସସ୍ମିତ ?

ତାରା—ନାରୀ ମୁହିଁ କି ବୁଝିବି ପୁରୁଷ ଭାବନା,
ବାହାର ସଂସାର ତବ, ଅନ୍ତଃପୁର ମୋର ।
ଆଲୋକ ଅନ୍ଧାରେ ଅଛି ଯେତିକ ପ୍ରଭେଦ,
ଘରେ ଓ ବାହାରେ ଅଛି ସେହି ବ୍ୟବଧାନ ।
ମଣୁଛ ବଭବ ଯା'କୁ ସେ ମୋର ଅଭାବ,
ବଣୁଚ ଭୂଷଣ ଯା'କୁ ସେ ମୋର ଦୂଷଣ ।

ବିଜୟକୁମାର—ଅଣ୍ଟୁରସି ମଣୁଛୁ ତବ ଏସନ ବଚନେ,
ନ ପାରୁଛୁ ବୁଝି ତଳେ ତବ ମନକଥା ।
ସମ୍ରାଟଙ୍କ ପ୍ରତିନିଧି ମହିଷୀ ଅଧରୁ,
ଶୁଣିବ ଏ ବାଣୀ ଭିବ ନଥିଲି ତ କେବେ ।
କହ ପ୍ରିୟେ ! ମନଖୋଲି କପାଇଁ ବିଷାଦ,
କିବା ଊଣା ଅଛି ରାଜପ୍ରତିନିଧି ପକ୍ଷେ ।

ତାରା—ଅକାଶ ଭୂତଳ ଲଗ୍ନ ପ୍ରାଚୀ ଚକ୍ରବାଳେ,
ଥାଏ ଯେବେ ସୂର୍ଯ୍ୟ ସର୍ବେ ଅନାନ୍ତି ତାହାଙ୍କୁ,
ତମିସ୍ରାନାଶକ ବୋଲି କରନ୍ତି ବନ୍ଦନା,
ଆନନ୍ଦେ ଅଧୀର ହୋଇ ଲାଗିଯାନ୍ତି କାମେ ।
ଉଠେ ଯେବେ ସେହି ସୂର୍ଯ୍ୟ ସର୍ବୋଚ୍ଚ ଆକାଶେ,
ଅସହ୍ୟ ହୁଏ ତା' ତାପ ଭୂତଳେ ସଭିଙ୍କୁ ।
ଲୋଡନ୍ତି ସକଳେ ତାଙ୍କୁ କରିବାକୁ ଆଡ,
ପ୍ରତୀକ୍ଷନ୍ତି ଅସ୍ତ ଯିବ କେବେ ସେ ତପନ ।
ସେହିପରି ଅତି ଉଚ୍ଚ ଆରୋହଣ ତବ,
ଦେଉଛି ସନ୍ତାପ ସିନା ସୁବର୍ଣ୍ଣନଗରେ ।
ଦୀର୍ଘଶ୍ୱାସେ ଗୁହିଁଛନ୍ତି ପ୍ରଜାସାଧାରଣ,
କେବେ ହେବ ଅସ୍ତମିତ ମଧ୍ୟାହ୍ନ ତପନ ।
ବାଜୁଛି ସେ ଶ୍ୱାସ ଆସି ନାରୀହୃଦେ ମୋର,
ନ ହୁଏଁ ପ୍ରଫୁଲ୍ଲ ତେଣୁ ତବ ଏ ଗୌରବେ ।

ବିଜୟକୁମାର—ଅଛି କେ ମନୁଷ୍ୟ ଆଜ ସୁବର୍ଣ୍ଣନଗରେ,
ମନାସିବ ମାୟାପୁରୀ ରାଜତ୍ୱ ବିଲୋପ ?
ଥିଲା ଯାଙ୍କ ନ୍ୟସ୍ତ ସତ୍ତ୍ୱ ବହୁଯୁଗ ବ୍ୟାପୀ,
ଏ ରାଜ୍ୟ ପ୍ରଧାନ ଥିଲେ ଯେତେକ ସାମନ୍ତ,

ସ୍ୱଦେଶ ସ୍ୱଧର୍ମ ନାଦ ଉଠାଇ କୌଶଳେ,
ଲଢ଼ିଥିଲେ ଯଥାଶକ୍ତି ମାତ୍ରଣ ବିଦ୍ରୋହେ,
ଶାନ୍ତ ସେ ବିଦ୍ରୋହ ତଥା ବିଲୁପ୍ତ ସାମନ୍ତ
ଅତୀତ ଗର୍ଭରେ ଯାଇ କାହିଁ ନିକ୍ଷେପିତ ।
ନୂତନ କୁଳୀନ ନବସାମନ୍ତ ସହାୟେ,
ସରଜନ୍ତି ରାଜାଦେଶେ ସୁବର୍ଣ୍ଣନଗରେ,
ଅଛି କେ ଉଦ୍ଧତ ଆଉ ନିଷ୍କଣ୍ଟକ ରାଜ୍ୟେ,
କହିବ ବଚନ ପଦେ ନିନ୍ଦି ମୋ ଶାସନ ?
ତାରା—ଜାଣେ ମୁଁ ଦମନ ନୀତି ତବ ଅପର୍ଯ୍ୟାପ୍ତ,
କରଅଛି ମାୟାପୁରୀ ରାଜଦଣ୍ଡ ଦୃଢ଼,
ବହୁଦୂରେ ଏହି ରାଜ୍ୟ ସୁବର୍ଣ୍ଣନଗରେ;
ଅହରହ ଭୟେ ସବେ ସେ ରାଜ ଅଧୀନେ ।
ଗରୀୟସ ବାହୁବଳେ ଦବାଇଛ ସିନା,
ଏ ଦେଶବାସୀଙ୍କ ଦେହ ଉପ୍ପର ଶାସନେ—.
ବିଜୟକୁମାର—ନୁହେଁ ସେ ଦମନ, ପ୍ରିୟେ, କ୍ଷଣସ୍ଥାୟୀ କେବେଁ,
ଚିରକାଳ ପାଇଁ ଲୁପ୍ତ ତାଙ୍କ ଶୌର୍ଯ୍ୟ ବୀର୍ଯ୍ୟ,
ସମୂହ ନିରସ୍ତ୍ରୀକୃତ ସୁବର୍ଣ୍ଣ ନଗର,
ନ ପାରିବେ କଳ୍ପି କେହି ସ୍ୱାତନ୍ତ୍ର୍ୟ ସ୍ୱପନେ,
ରହିଥିବେ ଚିରକାଳ ଏ ଦେଶ ଜନତା,
ମାୟାପୁରୀ ଦୟାପ୍ରାର୍ଥୀ ହୋଇ ଅତି ନମ୍ର ।
ତାରା—ଜାଣେ ମୁଁ ସେ ସବୁକଥା ଶୁଣ ଧୀରହୋଇ,
କହିବାକୁ ଦିଅ ମୋତେ ପଚ୍ଛୁରୁଛି ଯେବେ ।
କରିଛ ଆୟତ୍ତ ସିନା ଏ ଦେଶ ଶରୀର,
ରହିଛି ତ ମନ ତାଙ୍କ ସ୍ୱଚ୍ଛନ୍ଦ ବିହାରୀ !

ହେଉ ଯେତେ ଶକ୍ତିଶାଳୀ ଦୃପ୍ତ ରାଜଦଣ୍ଡ,
ପାରିଛି କି କେବେ କରି ସେ ମନ ଆୟତ୍ତ ?
ଜଳଦ ଉହାଡ଼େ ଯଥା ଚନ୍ଦ୍ରମା କିରଣ,
ନ ହୁଏ ମଳିନ ତଳେ ହେଲେହେଁ ଅଦୃଶ୍ୟ,
ସେହିପରି ମାୟାପୁରୀ ପ୍ରତାପେ ଆଚ୍ଛନ୍ନ,
ଏ ଦେଶ ଭିତରେ ଅଛି ସେ ଉତ୍କଳ ମନ,
ଖୋଜୁଛି ସୁବିଧା ସେହୁ ଆତ୍ମ ପ୍ରକାଶନେ,
ଜାଣେ କି ଉଠୁଛି ସେଠି କି ଭାବ ଉଚ୍ଛ୍ୱାସ ?
ବିଜୟକୁମାର—ଆବଶ୍ୟକ ନାହିଁ କିଛି ତାହା ଜାଣିବାର ।
ଅଗାଧ ସାଗର ତଳେ କେତେ ଦୁଷ୍ଟ ଜୀବ,
ରହିଛନ୍ତି ଲୁଚି ତା'ର ରଖେ କି ଖବର,
ପୋତବାହ ପୋତବାହି ଯାଉଥାଏ ନିତେ ?
'ମନ' 'ମନ' ବୋଲି ଯାର କରୁଛ ବଡ଼ାଇ,
ଦେଶବାସ ଭଳି ତା'ର ନିତ୍ୟ ଆଚରଣ ।
ଯେଉଁଠି ହିଭବ ସେଠି ଯାଏ ସେ ଦଉଡ଼ି,
ଅଭ୍ୟାସ ବଶେ ସେ ଗୁଡ଼ିକ କ୍ରମ ଅନୁସରି ।
ଭାବୁଛ କି ଖାଲି ଦଣ୍ଡନୀତିର ପ୍ରୟୋଗେ,
ତିଷ୍ଠିଛି ରାଜତ୍ୱ ଏଠି ମାୟାପୁରୀଙ୍କର ?
ଭ୍ରାନ୍ତ ସେ ଧାରଣା ଯଦି ଭାବୁଥାଅ ତାହା ।
ଶାମ, ଦାନ, ଦଣ୍ଡ, ଭେଦ, ଏହି ଗୁରି ନୀତି,
କୌଶଳେ ପ୍ରଯୁକ୍ତ ଏହି ସାମ୍ରାଜ୍ୟ ଶାସନେ ।
କଦାପି ନଘଟେ ତେଲେ ମାନାଧିକ୍ୟ କା'ର ।
ଉଷ୍ଣ ହେଲେ ଅତି ତହିଁ ଶୀତଳ ପ୍ରୟୋଗ,
ଅତି ଶୀତ ହେଲେ ତହିଁ ଉତ୍ତାପ ପ୍ରୟୋଗ

ଏହିପରି ଯଥାକ୍ରମେ ନୀତି ଅନୁସରି
ରକ୍ଷିତୁ କୌଶଳେ ଦେଶ ସମ ପରିସ୍ଥିତି ।
କେବେ ଯଦି ଲୋକମତ ହୋଇଯାଏ କ୍ଷିପ୍ତ
ମାତ୍ସ୍ୟାପୂର୍ଣ୍ଣ ରାଜ ପ୍ରତି କୌଣସି କାରଣେ,
ଅବଲମ୍ବେ କରାହୁଏ ସାନ୍ତ୍ୱକ ବ୍ୟବସ୍ଥା ।
ପୁଣି ଯେବେ ମୂର୍ଖଲୋକେ ନ ବୁଝି ସାନ୍ତ୍ୱନ,
ମାତନ୍ତି କୋହଳ ପାଇ ମର୍ଯ୍ୟାଦା ନମାନି,
ସେହିକ୍ଷଣି ହୁଏ ପୁଣି ଦମନ ପ୍ରଯୁକ୍ତ
ରକ୍ଷିବାକୁ ତୁଳାଦଣ୍ଡ ସମ ଅବସ୍ଥାରେ,
ଚାଲିଥାଏ ଏହିପରି ପର୍ଯ୍ୟାୟାନୁକ୍ରମେ ।
ସନ୍ଧ୍ୟାପରି ଭେଦନୀତି କାର୍ଯ୍ୟ ଅତି ସୂକ୍ଷ୍ମ,
ନ ଦିଶେ ଆଖିକୁ ତାହା ନ ଶୁଣେ ତା' କାନ,
ବାୟୁପରି ବ୍ୟାପ୍ତ ହୋଇ ଚଳେ ସେ ଗୋପନେ
ସ୍ୱଗୌରବ, ବଂଶଗର୍ବ, ଜାତି ଅଭିମାନ,
ଧାର୍ମିକ ଆଗ୍ରହ ପୁଣି ପ୍ରାଦେଶିକ ପ୍ରୀତି,
ଏ ସବୁ ସଜାଡ଼ା ହୋଇ ହୁଏ ପ୍ରବର୍ତ୍ତିତ
କରିବାକୁ ଏହି ଦେଶ ଶତଧା ବିଭକ୍ତ ।
ପରସ୍ପର ଦୋଷ ଦେଖି ଉଭୟଙ୍କ ସରବେ,
ନ ମିଳେ ତ ସାହ୍ୱ କା'ଙ୍କୁ ଦ୍ୱିକାଯ୍ୟ ବିଚାରୁ ।
ଏ ସବୁ ଉପାୟେ ଜନସାଧାରଣ ମନ,
ହୋଇଛୁ ନିଯୁକ୍ତ, ନାହିଁ ତାଙ୍କ ଅବସର,
ଭାବିବାକୁ କ୍ଷଣେ ହେଲେ ଶାସନବିରୋଧ ।
ରାଣୀ—ନ ବୁଝେ ମୁଁ ରାଜନୀତି ସ୍ୱଭାବେ ରମଣୀ,
କି କରିବି ପ୍ରତ୍ୟୁତ୍ତର ନ ଦିଶୁଛି କିଛି ·

କେ ଜାଣେ କାହିଁକି ମୁହିଁ ଗଣୁଛି ପ୍ରମାଦ,
ମନେହୁଏ ଘଟୁଅଛି କେଉଁଠାରେ ଦୋଷ ।
ରାଜପୁତ୍ରକୁମାର—ବୃଥା ସେ ବିକଳ୍ପ ମନେ କହୁଛି ନିଶ୍ଚିତ,
ସୁଦୃଢ଼ ପର୍ବତ ପରି ମାୟାପୁରୀ ରାଜ
ପ୍ରତିଷ୍ଠିତ ଏହି ଦେଶେ ଅଚଳ ଅଟଳ
ନ ପାରିବ ଟାଣି ତା'କୁ ଭୂମିକମ୍ପ ସୁଦ୍ଧା ।
ସେ ଶାସନ ପ୍ରତିନିଧି ଏହି ତବ ସ୍ୱାମୀ,
ଗୌରବେ ବରିବେ ଆଜ ସେହି ସର୍ବଶ୍ରେଷ୍ଠ ।
ସୁଯୋଗ୍ୟ କୁମର ଆମ ମିହିର ଯୁବକ,
ସମାଜ ଅନ୍ତେ ହେବ ଏହି ପଦ ଅଧିକାରୀ ।
ପରମ୍ପରା କ୍ରମେ ଯାଇ ବଢ଼ିବ ଗୌରବ,
ସ୍ରୋତସ୍ୱିନୀ ପରି ସୁଖେ ହେବ ପ୍ରବାହିତ ।
ହୁଅ ଗୋ ପ୍ରଫୁଲ୍ଲ ପ୍ରିୟେ ହୁଅ ଗରବିନୀ,
ଅବସାଦ କାହିଁ ନେଇଁ ବିଧାତା ପ୍ରସନ୍ନ ?

# ଗ୍ରାମବାସୀଗଣ

ଦାସପୁଅ — ଶୁଣିଛ ନାଁ ମହାପାତ୍ରେ ଜଣେ ଏକ ସନ୍ନ୍ୟାସୀ,
କହୁଛନ୍ତି ଛଡ଼ାଇ ନେବ ସୁବର୍ଣ୍ଣ ନଗର,
ମାଯ୍ବାପୁରୀ ରାଜଠାରୁ ବିନା ରକ୍ତପାତେ,
ଜାଣେ କନ୍ତି ଯାଦୁ ସେହି ମନେ ହୁଏ ମୋର ।
ମହାପାତ୍ରେ—ନ କହ ସେ କଥା କନ୍ତି ମୋ ଦୁଆରେ ବସି,
ଶୁଣିନାହିଁ କହିଗଲ କଅଣ ଏଠାରେ ।
ଜାଣ ତ ସେଦିନ ହାଟେ ଘଟଣା ସମସ୍ତ,
କ କଥା ବା କହିଥିଲା ସାହୁପୁଅ ସେଠି ?
ଧରିନେଇ ମାମୁଘରେ କରିଛନ୍ତି ବନ୍ଦ,
ଘଣାରେ ବଳଦ ପରି ଜୋଡ଼ାହୋଇ ସେଠି,
ବୁଲୁଛନ୍ତି ସେ ଧନସାରି ଜେଲଖାନା ଘରେ ।
ଦେଖୁଛ ଶୁଣୁଛ ସବୁ ପୁଣି ସେହି କଥା,
ବାରବାର କହୁଛ ଅବୁଝାଙ୍କ ଭଳି ।
ଦାସପୁଅ—ଯାଇଥିଲି ଶୁଣିବାକୁ ସେ ଦିନକା ସଭା,
କହୁଛନ୍ତି କଣ ସେହି ସନ୍ନ୍ୟାସିର ଦଳ
ଦେଖିଲି ସେଠାରେ ସବୁ ବଡ଼ ଆଚମ୍ବିତ,
ହଜାର ହଜାର ଲୋକ ହୋଇଛନ୍ତି ରୁଣ୍ଡ
ଜୟ ସନ୍ନ୍ୟାସୀର ଜୟ ପଡ଼ୁ ଅଛି ହୁଡ଼
ଛିଡ଼ା ହୋଇ ଜଣେ ସେହି ସନ୍ନ୍ୟାସୀର ଲୋକ,
କହିଗଲା ଅନର୍ଗଳ କେତେ କେତେ କଥା
ବୁଝୁଥିବ ନ ଥାଏ ମୁହିଁ ବାଟୁଲି ତାହାର ।

ମହାପାତ୍ର—କହ ଅଲପଟକ ସେଠି ପଡ଼ନ୍ତି କ କଥା ।
ଚମ୍ପଟକ କହମା' ସବୁ ଜଲଦ ଜଲଦ ।
ଦାସପୁଅ—ଯାହି ଗୋଟେ ଶୁଣିଲି କ ସବୁ ତା'ର କଥା,
ମହାପାତ୍ର—ମୋଠାମୋଟି ତେବେ କସ କହନ୍ତି ସେ ଲୋକ
ଦାସପୁଅ—ଏଇ ଗରିବଙ୍କ କଥା କହନ୍ତି ବୁଝାଇ,
ମହାପୁରୀ ରାଜ ଯୋଗୁଁ ଏ ଦେଶ ମଣିଷ
ଦିନୁଁ ଦିନୁଁ ହେଉଛନ୍ତି କାଙ୍ଗାଳ ଗରିବ ।
ଲଣାକିନିଏ ପରଦେଶୀ ଜୋକ ପରି ଧନ,
ଏ ରାଇଜ ରଜା ହେବେ ଏହି ଦେଶବାଲା,
କହନ୍ତି ଏପରି କେତେ ମନେ ନାହିଁ ସବୁ ।
ମହାପାତ୍ର—ଦିନୁଁ ଦିନୁଁ ଧନ ସବୁ ଯାଉଅଛି ହରି,
ଦାନା କନା ନ ମିଳୁଛି ଏ ସବୁତ ସତ,
ଅଟେଙ୍କ ନିଭାଇବା କଥା, ଅଧିକା ନଅଣ
କହନ୍ତି ସନ୍ନ୍ୟାସୀ ସେହି ଏତେ ଲୋକ ଆଗେ ।
କହନ୍ତି କ ପ୍ରତିକାର କଛି ହେଲେ ସେହୁ,
କହ ତୁ ସେକଥା ମୋତେ ବୁଝୁ ମୋର ମନ ।
ଦାସପୁଅ—ପହଡ଼େ କ ପାଞ୍ଚଘଡ଼ି କହନ୍ତି ସେ ଲୋକ,
ହାତଥାଏ କେତେ କଥା କହି ଅନର୍ଗଳ,
ଶୁଣିଲି କେତେକ, କେତେ ରହନ୍ତି ଅଶୁଣା,
ଭୁଲିଗଲି ଶୁଣା କଥା ସେଠୁଁ ଆସୁଁ ଆସୁଁ ।
ବୁଝିଲି ଏତକ ଠିକ୍ ଅଛି ମୋର ମନେ,
ଗରିବଙ୍କ ଦୁଃଖ ଯିବ ସନ୍ନ୍ୟାସୀ ଅମଳେ ।
ମାନଛି ମୋ ମନ ଦେଖି ସେଦିନକା ସଭା,
ଏ ଗାଁ ଅଟେର କରିବା କ ସଭାର ଯୋଗାଡ଼ ?

ମହାପାତ୍ରେ—କହନାଁ ସେ କଥା ଏଠି ବଡ଼ କରି କେବେ,
ବାଜିଲେ କା' କାନେ ହେବ ସାହୁପୁଅ ଦଶା ।
ହେବ ଏ ଗାଆଁରେ ଯାହା ହେବ ଗୁରିଆଡ଼େ,
ଦେଖାଇବା କାହିଁପାଇଁ ଆଗେ ଆମେ ମୁଣ୍ଡ ?
ନ ହେବ ଅଗୁଆ କେବେଁ କୌଣସି କଥାରେ,
ପୁରୁଣା ବଚନ ଏହା ରଖିଥିବୁ ମନେ ।
ଦାସପୁଅ—କି ମନ୍ତ୍ର ସନ୍ୟାସୀ ଜାଣେ ପଢ଼ିଦେଲେ ତା'କୁ,
ବସିଯାଏ ଆପେ ଆପେ ବଡ଼ ବଡ଼ ସଭା ।
ହଜାର ହଜାର ଲୋକ ଘରଭୁଆ ଛୁଟି,
ପିଲା ବୁଢ଼ା ରୋଗୀ ସୁଦ୍ଧା ହୁଅନ୍ତି ପାଗଳ ।
ଆସନ୍ତି ଦଉଡ଼ି ସଭା ଶୁଣିବା ସକାଶେ,
ଯାଇଥିଲି ସେହିପରି ମୁହିଁ ସେ ସଭାକୁ,
ଡାକ ନାହିଁ କେହି ମୋତେ ସଭାକୁ ଯିବାକୁ ।
ପହିଲେ ମୁଁ ଡରୁଥିଲି ସଭା ନାଆଁ ଶୁଣି,
କେଜାଣେ କପରି ଯାଇ ପହୁଞ୍ଚିଲି ସେଠି,
ମନ୍ତ୍ର ନୁହେଁ, ମହାପାତ୍ରେ, ଆଉ କଣ ଇଏ ?
ମହାପାତ୍ରେ—ପଧାନେ ଶୁଣିଲେ କଥା ଦେବ ଯୋଃଊଷଧ
ଏକପାନେ ଉଡ଼ିଯିବ କାହିଁ ତୋ'ର ମନ୍ତ୍ର ।
ଦାସପୁଅ—ପଧାନଟା ଗାଁ ଲୋକ ଆମରି ମଣିଷ
ଦେଖୁଛ ନାଁ ଢଙ୍ଗ ତା'ର ଆଜକାଲି କଣ !
ମାଗିଯାଚି ଚଳୁଥିଲା କାଲି ସେ ଗାଆଁରେ,
ଆଜି ସେ ଉପରମୁହାଁ ନ ଅନାଏ ତଳେ ।
କିଛି ଟିକେ ହେଲେ ଏଠି ଦଉଡ଼େ ଥାନାକୁ,
ଛେଦ ଭେଦ ସବୁ କହେ ଯାଇ ଆମ ନାମେ ।

ଶୁଣିଁ ଦେଲେ ପଧାନଙ୍କୁ ଜଳଯାଏ ଦେହ
ମନ ହୁଏ ମାରିବ କି ଦୁଇବଧା ତାଙ୍କୁ ।
ମହାପାତ୍ରେ—ମୋତେ ପାଇ ଅଧିକାର ଶାନ୍ତ ରହିଛନ୍ତି,
ଭଗବତ ପଦ ଏହା ହେବ କି ଅନ୍ୟଥା ?
ପଧାନ ଗର୍ବିବ ଗ୍ଧାର କରି ତାଙ୍କର ବଳ,
ରାଜବଳ ଯୋଟେ ସିନା ପ୍ରତାପ ତାହାର ।
ପ୍ରଜାର ତାକତ କାହିଁ ରାଜବଳ ସଙ୍ଗେ,
ପକାଇବ ତାଙ୍କୁ ଯାଇ ସମକକ୍ଷ ହୋଇ ।
ଦାସପୁଅ—ମୋ ମନ ଡାକୁଛି ଯିବି ସନ୍ନ୍ୟାସୀର ଦଳେ,
ସମସ୍ତଙ୍କ ସାଙ୍ଗେ ମିଶି ପକାଇବ ତାଙ୍କୁ,
ମାୟାପୁରୀ ରାଜ ସାଙ୍ଗେ ହେଉ ଯା' ହେବାର,
ଜିତିଲେ ପରଶୁରାମ ନ ହେଲେ ଭିକାରୀ ।
ମହାପାତ୍ରେ—କରି କି ପାରିବୁ ତୁଷ୍ଟ ଯାଇ ସେ ଦଳଙ୍କୁ
ସାଗ ସୁଦ୍ଧା ସିଝିବ ନାଁ ତୋହଯୋଗେ କେବେହେଁ ?
ଦାସପୁଅ—ନାହିଁ କିଛି କରିବାର ସେଠି ମହାପାତ୍ରେ,
ଖାଲି ଜୟ ସନ୍ନ୍ୟାସୀର ଜୟ ମୁଁ କହିବି ।
କହୁଛନ୍ତି ଶହ ଶହ ସେହିପରି ମାତ,
ମିଶିବି ମୁଁ ଜଣେ ଯାଇ ଏତେ ଲୋକ ସାଙ୍ଗେ ।
ମହାପାତ୍ରେ—ତତଲା ପାଣି କି କେବେ ପୋଡ଼ିଦଏ ଘର ?
ଖାଲି କଥାରେ କି ହୁଏ କୌଣସି କରମ ?
ବାଡ଼ିରେ ମାଙ୍କଡ଼ ଯେବେ ଖାଉଥାଏ ଖନ୍ଦ,
ହୋ ହୋ କଲେ ଖାଲି ନ ଯିବ ପଳାଇ
ଖାଉଥିବ କନ କନ ଗୁରୁଆଡ଼େ ଗୁହିଁ,
ଜାଣିବ ଘଡ଼ିକେ ସେତ ନାହିଁ କେ କୁଆଡ଼େ ।

ବାଡ଼ିଖଣ୍ଡେ ଠେକାଠାଏ ହାତେ ଧରି ନେବେ,
ଯିବ ତା' ଅଡ଼କୁ ବେଗେ ଦେଖାଇ ବିକ୍ରମ
ତେବେ ଯାଇ ପଳାଇବ ମାଙ୍କଡ଼ ବାଡ଼ିରୁ
ନହେଲେ ସେ ଖାଉଥିବ ମନଇଚ୍ଛା ଯେତେ ।
ନ ଡରେ କଥାରେ ଯେବେ ସାମାନ୍ୟ ମାଙ୍କଡ଼,
ଡରିବେକି ଏଡ଼େ ବଡ଼ ରାଜାକ କଥାରେ ?
ଦାସପୁଅ—କରେଁ ଯେବେ ସନ୍ନ୍ୟାସିର ଜୟ ଜୟକାର
ପୁରି ଉଠେ ମନ ମୋର କେଜାଣେ କାହିଁକି ।
ଭୁଲିଯାଏଁ ଦୁଃଖ ଯେତେ ଘର କରଣାର,
ସୁଖର ବିଜୁଳି ମାରେ ସତେକି ଅନ୍ଧାରେ ।
ଶୁଖିଲା ପୋଖରୀ ପାଇ ଶ୍ରାବଣ ବର୍ଷା,
ଜମିଗଲେ ଅଳପ ପାଣି ଦିଶଇ ଯେପରି,
ସେହିପରି ହୋଇଯାଏ ଏ ଶୁଖିଲା ମନ,
ଶୁଣିଲେ ଦେଶର କଥା ସନ୍ତୁଠାରିବ ଯାଇ ।
ମହାପାତ୍ରେ—ମାଗିଲା ବେଳେ ପରି ଶ୍ରାବଣ ବର୍ଷା,
ଖରାଠାଏ କଲେ ଥାଣ ଯାଏ ପାଣି ଶୁଖି ।
ମାତେ କ ସେଥିରେ କେହି ବୁଦ୍ଧିଥିଲା ଲୋକ,
ହଠହଠା ଶେଷଫଳ ହେବ ସିନା ତୋର ।
ଦାସପୁଅ—ଯାହା କହ ମହାପାତ୍ରେ ମାତିବି ସେଥିରେ,
ଘଟିବ ଅବଶ୍ୟ ତାହା କପାଳେ ଯା' ଅଛି ।
ଲାଗିଲେ ଶ୍ରୀଚୈତନ୍ୟ ତୋର ସମ୍ଭାଳେ କି ମନ,
ନେଇଯିବ ଜଗନ୍ନାଥ କୌଣସି ଉପାୟେ ।
ମହାପାତ୍ରେ—ଦିଶୁଛି ଭଲ ଯା' ଯା'କୁ କରୁ ସେ ସ୍ୱଚ୍ଛନ୍ଦେ,
ମୋ ସାଙ୍ଗେ ସମ୍ପର୍କ କିଛି ନ ରଖିବୁ ଆଉ ।

ଏଇ ଦେଖ ଆସୁଛି ସେ ପଧାନ କୁଆଡ଼େ,
ଯାଅ ତୁ ଏଠାରୁ ଉଠି, ପକା ଅନ୍ୟ କଥା ।
( ପଧାନର ପ୍ରବେଶ )
ମହାପାତ୍ରେ—ଓଲଗି ପଧାନପୁଅ କୁଶଳତ ସବୁ ?
ଗରିବ ଦୁଆରେ ପାଦ ପଡ଼ିଲା କପରି ?
ପଧାନ—ଶୁଣିଲି ସନ୍ନ୍ୟାସୀ ଲୋକ ଆସି ଏ ଗାଁରେ,
କରିବେ କୁଆଡ଼େ ଏଠି ରାଜଦ୍ରୋହୀ ସଭା ?
ମହାପାତ୍ରେ—ନାହାଁରେ ଆଉ ଆଉ, ଆମ ଗାଁ ନିଷ୍ଠଳ
ନ ଲାଗିବ ଏଠି କେବେ ରାଜଦ୍ରୋହ ଚେର ।
ପଧାନ—ରହିଛନ୍ତି ବହୁଲୋକେ ଏ ଗାଁ ଖଣ୍ଡକେ,
ବୁଢ଼ାଙ୍କ ପିଅନ୍ତି ପାଣି ନର୍ଦ୍ଦମା ଉପାସେ ।
ଦାସପୁଅ—କିଏ ସେ ଏପରି ଅଛି ଆମକୁ ଅଜଣା,
ଜାଣିଥିବ ଅବା ତୁମେ ଆମେତ ମୂରୁଖ ।
ପଧାନ—କାହାଘରେ ଜର ଯେବେ ଫୁଟେ ହାଣ୍ଡିଶାଳେ,
ସାଙ୍ଗେ ସାଙ୍ଗେ ବାଜେ ଆସି କଥା ମୋ କାନରେ,
କରୁଛି ମୁଁ ସାବଧାନ, କହୁଛି ଭଲରେ,
ନ ଧରିବ ଦୋଷ କିଛି ହେଲେ କିଛି ପରେ ।
ଘର ଘର ବୁଲି ମୁହିଁ କରୁଛି ତାକତ,
ନ ଶୁଣିବ ଯେବେ ଶେଷେ ବୁଝିନେବ ମଜା ।
( ପ୍ରସ୍ଥାନ )
ମହାପାତ୍ରେ—ଯାଅ ତୁ ଏଠାରୁ ଦାସ ଏଇକ୍ଷଣି ଯାଅ,
ନ ଯିବ କାହୁଏ ପୁଣି ନ ଧୋଇବ ଗୋଡ଼ ।
ଦାସପୁଅ—ଆଗ୍ୟା ହେଉ ଯାଉଛି ମୁଁ ପୁଣି ପରେ ଦେଖା,
ଦେଖାଯାଉ କରୁଛନ୍ତି କସ ଜଗନ୍ନାଥ ।

# ସମ୍ରାଟ ଓ ସାମ୍ରାଜ୍ଞୀ

ସାମ୍ରାଜ୍ଞୀ—ଥିଲା ଭଲ ଥିଲା ଯେବେ ଏହି କ୍ଷୁଦ୍ର ରାଜ୍ୟ,
ଚଳୁଥିଲେ ଯଥା କଥା ପରମ ସନ୍ତୋଷେ ।
କଣିଲେ ଅଶାନ୍ତ ପିନା ନେଇ ପର ରାଜ୍ୟ !
ଶୁଣେ ତ୍ରସଠୁ ମୁହୂର୍ମୁହୁ ଆର୍ତ୍ତ ହାହାକାର,
ଅଶନ ବସନ ବିନା ସେ ଦେଶ ନିବାସି,
ଛାଡୁଛନ୍ତ ଖରେ ଦୀର୍ଘ ଉତ୍ତପ୍ତ ନିଶ୍ୱାସ,
ମରୁଭୂମି ଝଂଝାପରି ବାଜୁଛି ତା' ହୃଦେ,
ନପାରେ ସମ୍ଭାଳି ଆର୍ତ୍ତ କରୁଣ କନ୍ଦନ ।

ସମ୍ରାଟ—ଥିଲ ତୁମେ ରାଣୀ ଏବେ ହେଲଣି ସାମ୍ରାଜ୍ଞୀ,
ନଗଲା ତଥାପି ତୁମ ଚିତ୍ତ ଦୁର୍ବଳତା ।
ବହୁ ବସ୍ତୁ ବିନାଶରେ ଏକର ଉତ୍କର୍ଷ
ଚିରନ୍ତନ ମତ ଏହି ଈଶ୍ୱର ସୃଷ୍ଟିର ।
ଶ୍ରେଷ୍ଠ ଶ୍ରେଷ୍ଠ କୀଟ ନାଶି ଊର୍ଣ୍ଣନାଭ ବଢ଼ି,
ବହୁ ଜନ୍ତୁ ନାଶ କରି କେଶରୀ ପ୍ରଧାନ ।
ସଜୀବ ଅଜୀବ କେତେ ନାଶ କରି ବସ୍ତୁ,
ହୋଇଛନ୍ତି ମନୁଷ୍ୟ ଶ୍ରେଷ୍ଠ ସାର ଏ ସଂସାରେ ।
ଦେଖୁଛ ଯେ ରାଜଧାନୀ ବିଭବ ପସରା,
ବହୁ ଗ୍ରାମ ଲୁଣ୍ଠନର ପରିଣତି ତାହା ।
ପିନ୍ଧିଛ ଯେ ଅଳଙ୍କାର ସୁକାନ୍ତ ବିକାଶେ,
ଅପହୃତ ବହୁ ଅର୍ଥେ ଗଢ଼ା ସେ ଭୂଷଣ ।

ସ୍ୱଚ୍ଛନ୍ଦ ଆହାର ଯାହା କରୁଅଛ ନିତ,
ବହୁ ଲୋକ ଅର୍ଦ୍ଧାଶନ ଯୋଗୁଁ ତା ସମ୍ଭବ ।
ସହି ଯେବେ ଏତେ କଥା ନିର୍ବିକାର ମନେ,
ବିଚଳିତ କପାଁ ତେବେ ସାମ୍ରାଜ୍ୟ ଶାସନେ ?
ବହୁଦେଶ ପରାକ୍ରମେ ହୋଇ ସୁଶାସିତ,
ପୋଷିବେ ଅପର ଦେଶେ ନିଜ ଅର୍ଥଦାନେ,
ନିଯୁତର ମାତ ଏହି ନ ହେବ ଅନ୍ୟଥା,
ନ ଅଛି କାରଣ କିଛି ବ୍ୟଥିତ ହେବାର ।

ସାମ୍ରାଜ୍ଞୀ—ଅପର ବିନାଶେ ନିଜ ଉତ୍କର୍ଷ ସାଧନ,
ମନୁଷ୍ୟତ୍ୱ ଅପକର୍ଷ କରଇ ଘୋଷଣା ।
ଗସେ ଯେବେ ନର ତା'ର ଭଇ ନର ପଶୁଁ,
ହିଂସ୍ର ଜନ୍ତୁ ତୁଲ୍ୟ କଲେ ବିନାଶେ ବଢ଼ାଇ ।
ଦେଇଅଛି ଯେ ନିଯୁତ ଅତ୍ୟାଗ୍ରର ବୁଦ୍ଧି,
ସେହି ପୁଣି ଦେଇଅଛି ମାନବେ ବିବେକ,
ବତାଇ ଦେବାକୁ ବାଟ ଅଧୋଗାମୀ ନରେ ।
ନ କରେ କି ତବ ହୃଦ ଦଂଶନ ବିବେକ ?
ବୁଝିବି ଯେ ଦିନ ମୁହିଁ ହୋଇଛି କାରଣ,
ଅନଶନ, କ୍ଲେଶ ଅବା ବିଷାଦର କାହିଁ,
ସେହିଦିନ ସେହିକ୍ଷଣି ସୁଧାରିବି ନିଜେ,
ଭୋଗେଁ ପଛେ ଯେତେ ଦୁଃଖ ସେ ଉଦ୍ୟମ ଫଳେ ।

ସମ୍ରାଟ—ହସମାଡ଼େ ଶୁଣି ତବ ବିବେକ ବ୍ୟାଖ୍ୟାନ,
ଅଛି କି ବିବେକ ବୋଲି ବସ୍ତୁତ ସଂସାରେ ?
ଦୁର୍ବଳତା ଆଚ୍ଛାଦନେ ପ୍ରଯୁକ୍ତ ସେ ଶବ୍ଦ,
ବଞ୍ଚକେ ସାହାଯ୍ୟ ପୁଣି କରେ ସେ ଯଥେଷ୍ଟ ।

ଅଳ୍ପ ବୁଦ୍ଧି କ୍ଷୀଣ ଶକ୍ତ ବହୁ ସଂଖ୍ୟା ନର,
ମନ୍ତ୍ର ଭୀତ ସର୍ପପରି ବିବେକକୁ ଡରି
ରହନ୍ତି ଖେଳିବାପାଇଁ, ସବଳ ସୁବୁଦ୍ଧି
ଜାଙ୍ଗଳିକୁ ଗୃହିଁ, ଶୁଣି ଡମ୍ବରୁ ବାଦନ ।
ଶାସକ ଚନେ ନ ଶୁଣେ ସେ ଦୁର୍ବଳତା ମନ୍ତ୍ର ।
ବିଦିତ ବିବେକ ନାମେ ଯାହା ଏ ଜଗତେ ।
ସାମ୍ରାଜ୍ଞୀ—କି ମୂର୍ଖେ ବୋଲଅ ତୁମେ ଶାସକ ନିଜକୁ,
ଶାସନ ବଦଳେ ଯହିଁ କରୁଛ ଶୋଷଣ ।
ସମୃଦ୍ଧ ଉଦ୍ୟାନ ଆଜି ମରୁ ପରିଣତ,
ତୁମରି ଶୋଷଣ ଫଳେ ସୁବର୍ଣ୍ଣ ନଗର ।
ଦେଖାଅ କପରି ମୁହିଁ ସେ ଦେଶ ବାସୀଙ୍କୁ,
ଅପହର୍ତ୍ତା ବୋଲି ତଳେ ନ ଲଗେ ସଂକୋଚ
ସମ୍ରାଟ—ସ୍ୱଦେଶ ଶାସନ ଚଳେ ପ୍ରଜାଙ୍କ କଲ୍ୟାଣେ
ବିଦେଶ ଶାସନ ଚଳେ ସ୍ୱଦେଶ କଲ୍ୟାଣେ ।
ସାମ୍ରାଜ୍ୟ ଶାସନ ଅର୍ଥ ମାନୁଛୁ ଶୋଷଣ,
ସେ ଶୋଷଣ ଆବଶ୍ୟକ ସ୍ୱଦେଶର ହିତେ ।
ଅପହର୍ତ୍ତା ବୋଲି ଥୋକେ କହୁଛନ୍ତି ସତ,
'ଅଗ୍ରସର ମାନ୍ଧାପୁରୀ' କରନ୍ତି ଚିତ୍କାର ।
ସଙ୍ଗେ ସଙ୍ଗେ ଛନ୍ତି ବହୁ ନେବାକୁ ଆଦର,
ମୋହରି ଶାସନ ତାଙ୍କ ଦେଶର କଲ୍ୟାଣେ ।
ନାହିଁ ମୋ ଜନତା ସହ ପ୍ରତ୍ୟକ୍ଷ ସମ୍ପର୍କ,
ଅଛନ୍ତି ସେଠାରେ ମୋର ବହୁ ପ୍ରତିନିଧି,
ହେଥି ଦେଶବାସୀ ଉଚ୍ଚ ଶିକ୍ଷିତ ମାନବ
ଆଦରେ ଚଳାନ୍ତି ସେଠି ମାନ୍ଧାପୁରୀ ରାଜ ।

ସାମ୍ରାଜ୍ଞୀ—ସ୍ୱଦେଶେ ବିଦେଶୀ ରାଜ ଚଳାନ୍ତି କପରି
ସେହି ଦେଶବାସୀ, ଶୁଣି ହେଉଛୁ ବିସ୍ମିତ !
ଅଛୁକି ମନୁଷ୍ୟ କେହି ନର ପଦ ବାଚ୍ୟ,
ବିଦେଶୀ ଅଧୀନେ ହେବ ସ୍ୱଦେଶ ଶାସକ ?
ଅଛନ୍ତି କି ବହୁଲୋକ ସତେ ସେ ରାଇଜେ,
ମଣନ୍ତି ଯେ ସ୍ପୃହଣୀୟ ବିଦେଶୀ ଶାସନ ?
ସମ୍ରାଟ—ସେହିତ ରହସ୍ୟ ସେଠି ଅଜଣା ତୁମକୁ,
ଉଡ଼ାକଥା ଶୁଣି ଖାଲି ହେଉଛ ଅଥୟ ।
ଦେଶଜ୍ଞାନ ନାହିଁ ସେଠି ଜନସାଧାରଣେ,
କ୍ଷୁଦ୍ର କ୍ଷୁଦ୍ର ସମ୍ପ୍ରଦାୟ ବିଭକ୍ତ ସମସ୍ତେ ।
ପ୍ରତ୍ୟେକ ଲୋଡ଼ଇ ଚାପି ଦେବାକୁ ଅନ୍ୟକୁ,
ବିଦେଶୀ ସାହାଯ୍ୟେ, ତେଣୁ ସମସ୍ତେ ଦୁର୍ବଳ
ଅଗଣିତ ଲୋକ ସେଠି ମଣନ୍ତି ଗୌରବ,
ହେବାପାଇଁ କର୍ମଚାରୀ ବିଦେଶୀ ଅଧୀନେ ।
ଅନ୍ୟଠୁଁ ଆଲୋକ ନେଇ ଦେଖାଇ ଅପରେ,
ଚାହାଁନ୍ତି ହେବାକୁ ବଡ଼, ସୁଧାଂଶୁ ଯେସନେ ।
ତିଷ୍ଠିଛି ଶାସନ ଆମ ଏଥିଯୋଗେ ସେଠି,
ଅନ୍ୟଥା କି ସମ୍ଭବନ୍ତା ସାମ୍ରାଜ୍ୟ ରକ୍ଷଣ
ନଜାଣି ସମସ୍ତ ବୃତ୍ତ କହୁଥିଲ କଥା;
ଶୁଆପରି ରଡ଼ୁଥିଲ ବହି ପଢ଼ାମିତ ।

# ସନ୍ନ୍ୟାସୀ ଓ ମଞ୍ଜରୀ

ସନ୍ନ୍ୟାସୀ—ଦୁଇବସ୍ତୁ ଦୁନିଆରେ ଦିଏ କର୍ମ ସିଦ୍ଧି,
ନୈତିକ କ୍ଷମତା ଅବା ଶରୀର ବିକ୍ରମ ।
ବହୁଦୂର ସିଦ୍ଧିପଥେ ଯାଏ ଦେହ ବଳ,
ଶେଷେ କିନ୍ତୁ ରୁଦ୍ଧ ହୋଇ ହୁଏ ସେ ଅଚଳ ।
ଅପରନ୍ତୁ ନୀତି ବଳ ସଦା ସିଦ୍ଧିପ୍ରଦ,
ନ ହୁଏ ଅଚଳ କେବେ ଅବସ୍ଥା ବିଶେଷେ ।
ଶରୀର ଶକତି ସାଧି ବହୁଦେଶ ଆଜି,
ହେଉଛନ୍ତି ସିଦ୍ଧିପଥେ ଗତେ ଅଗ୍ରସର,
ଶେଷେ ସେହି ସିଦ୍ଧି ହେବ ତାଙ୍କ ଅନ୍ତରାୟ,
ନ ପାରିବେ ଆଗେ ଯାଇ ଅତିକ୍ରମି ତାଙ୍କୁ ।
ଖୋଜିହେବେ ଅନ୍ୟପଥ ସରଳ ସୁଗମ,
ଆଦରିବେ ନୀତିବଳ ଅନନ୍ୟ ଉପାୟ ।
ତଥାପି ଦୈହିକ ବଳ ଦିଏ ତାଙ୍କୁ ସିଦ୍ଧି,
ଭୁଲନ୍ତି ସଂସାରେ ସେହି ଉନ୍ନତ ମସ୍ତକେ ।
'ସୁବର୍ଣ୍ଣ ନଗରୀ ଆଜି ନିଜ କର୍ମ ଦୋଷେ,
ପହୁଞ୍ଚିଛି ନିଷ୍କର୍ମତା ଶେଷ ସୀମେ ଆସି ।
ଘାରିଛି ଅନ୍ଧାର ଘର ବିରାଟ ବ୍ୟର୍ଥତା,
ନ ପଡ଼େ ଯହିଁରେ କ୍ଷଣେ ଆଶା କ୍ଷୀଣ ରେଖା ।
କରିବାକୁ ହେବ ଏହି ଦେଶେ ସଂଚାଳନ,
ସଫଳତା ଆଶା, ଯାହା ଯୋଗେ ଦେଶବାସୀ
ମଣିବେ ଅସ୍ଥିର ତାଙ୍କ ନିରାଶା ଗହ୍ୱରେ ।

ବାହାର ଆସିବାପାଇଁ ହେବେ ସେ ବ୍ୟାକୁଳ
ସୃଷ୍ଟିଆଗୋଳକେ, ଯହିଁ ପ୍ରାପ୍ତି ରହିଛନ୍ତି ସିଦ୍ଧିର ।
ସେଥିପାଇଁ ସବୁ ଚେଷ୍ଟା ସମସ୍ତ ଉଦ୍ୟମ,
କରୁଛି ମୁଁ ବନ୍ଧୁ ବନ୍ଧୁ ଶକ୍ତି ଦେଇ ମୋର ।
ଅସମ୍ଭବ ଦେହ ବଳ ପରାଧୀନ ପକ୍ଷେ,
ତେଣୁ ମୁଁ ବଢ଼ାଇ ଅଛି ନୈତିକ ସାଧନା,
ଯାହା ଯୋଗେ ସଞ୍ଚରିବ ମୃତ ଦେହେ ପ୍ରାଣ,
ଉଠିବ ଜୀବନ୍ତ ହୋଇ ଅର୍ଦ୍ଧ ମୃତ ଦେଶ ।
ଓତପ୍ରୋତ ଜାତୀୟତା ଖେଳିବ ଏ ଦେଶେ,
ପରାଧୀନ ବୋଲି ତୀବ୍ର ବେଦନା ଅସହ୍ୟ
ଅନୁଭବେ ଦେଶବାସୀ ହୋଇବେ ଅସ୍ଥିର,
ଘୁଞ୍ଚିବ ଦାସତ୍ୱ ସେହି ଅସ୍ଥିରତା ଫଳେ ।
ମଞ୍ଜରୀ—କ୍ଷମାଦେବେ କରୁଛି ମୁଁ ଏକ ନିବେଦନ,
ବୁଝାଇ କହନ୍ତୁ ଯାଉ ମୋ ମନୁ ସଂଶୟ ।
ଝାଲିକ ଜାତୀୟ ଭାବ ହେଲେ ଜାଗରିତ,
ଅପସରି ଯିବ ଦେଶୁଁ ଏ ହୀନ ଦାସତ୍ୱ ?
ଜାତୀୟତା ଯଜ୍ଞେ ଆଜି ପଡ଼ନ୍ତି ଆହୁତି,
ଆବାଳ ବୃଦ୍ଧ ବନିତା ଦେଶବାସୀ ସବେ,
କାରାଗାର ପୂର୍ଣ୍ଣ ଆଜି ଦେଶ ଭକ୍ତଜନେ,
ହେଉଛନ୍ତି ଗୁଳି ମୁଖେ ଶତ ଶତ ବଳି,
ତଥାପି କାହିଁ ତ ଦିଲେ ନମିଳେ ସୂଚନା,
ଆସୁଛି ପାଖେଇ ବୋଲି ମୁକ୍ତିର ଦିବସ ?
ଅପରନ୍ତୁ ମନେହୁଏ ବିଦେଶୀ ଶାସନ,
ଦୃଢ଼ତର ହୁଏ ଜନ ଜାଗରଣ ସଙ୍ଗେ ।

ସନ୍ୟାସୀ—ଜାଣେ ମୁଁ ଉଠୁଛି ଏହି ପ୍ରଶ୍ନ ସ୍ୱତଃମନେ,
ମୋ' ନିଜ ହୃଦୟେ ସୁଦ୍ଧା ଉଠୁଛି ସେହି ଭାବ ।
ଏତେକାଳ ଆନ୍ଦୋଳନ ଚଳାଇ ଅବଧି,
ନ ଦିଶଇ ସତ୍ୱ ସୁଦ୍ଧା ଆଂଶିକ ସିଦ୍ଧିର ।
ଶତ ଶତ ଗୁଳି ଆଗେ ମରୁଛନ୍ତି ସତ ,
ଦେଶପାଇଁ ହସି ହସି ଦେଇ ଆତ୍ମବଳୀ,
ସହସ୍ର ସଂଖ୍ୟାରେ ବନ୍ଦ ହେଉଛନ୍ତି ସତ,
ସହୁଛନ୍ତି ନାନାବିଧ ଅତ୍ୟାଚାର କେତେ,
ବିରାଟ ଏ ଦେଶ ତୁଲେ ନୁହେଁ ବେଶୀ ତାହା,
ନେତକ କରୁଛି ଦେଶ ମୁକ୍ତିପାଇଁ ତ୍ୟାଗ ।
ଅସଂଖ୍ୟ ଏ ଦେଶବାସୀ ତଥାପି ତତ୍ପର,
ସ୍ୱାର୍ଥ ପାଇଁ ବିଦେଶୀର ହେବାକୁ ସହାୟ ।
ଏହି ଦେଶବାସୀ ହାତେ ଏ ଦେଶ ଶାସିତ,
ହେଉଥିବା ଯାଏଁ ନାହିଁ ଏ ଦେଶର ମୁକ୍ତି ।
ଯେ ଦିନ ବିଦେଶୀ ରାଜା ହେବ ଅସମର୍ଥ,
ପାଇବାରେ କର୍ମଚାରୀ ଦେଶୀୟ ସହାୟ,
ସେହିଦିନ ମୁକ୍ତ ଦେଶ, ଲୁପ୍ତ ଅଧୀନତା,
ଦୃପ୍ତ ଶତ୍ରୁ ଆପେ ଆପେ ଯିବ ଅପସରି ।
କି ଉପାୟେ ସେ ଅବସ୍ଥା ସୃଷ୍ଟି ହେବ ଦେଶେ,
ଯହିଁରେ ମଣିବେ ଲୋକେ ଅତି ନିନ୍ଦନୀୟ,
ବିଦେଶୀର ଦାସ ହେବା ସ୍ୱାର୍ଥର ବଶରେ,
ଯେ ଅବା ହୋଇବେ ଦାସ, ହେବେ ବର୍ଜ୍ଜନୀୟ
ନ ରହିବ ସମାଜେ ତା' ସ୍ଥାନ କାହିଁ ଛଳେ,
ଏ ପ୍ରଶ୍ନେ ହେଉଛି ମନ ସଦା ଆଲୋଡ଼ିତ ।

ମନେହୁଏ ବହୁଲୋକ ଦେଲେ ଆତ୍ମବଳି,
ଠଳିବ ହୃଦୟ ତେବେ ସେହି ଭାଇଙ୍କର,
ତୁଚ୍ଛ ଅର୍ଥ ପାଇଁ ଯେହୁ କରନ୍ତି ଦାସତ୍ୱ ।
ମଞ୍ଜରୀ—ନିରାଶା ଜର୍ଜ୍ଜର ନିଃସ୍ୱ ନିରୀହ ଜନତା,
ପାଇ ତବ ଆଶାଭରା ସାହସ ପ୍ରେରଣା,
ମାତିଛନ୍ତି ପାଗଳ ହୋଇ ସ୍ୱାଧୀନତା ପାଇଁ,
କରି ଦାବୀ ବଞ୍ଚିବାକୁ ମନୁଷ୍ୟ ଜୀବନେ ।
ତଥାପି ନିଦଶେ ଦୂରେ ସିଦ୍ଧି ଚକ୍ରବାଳ,
ପର୍ବତ ପ୍ରମାଣ ବାଧା ରହିଛନ୍ତି ମଝିରେ ।
ଯେତେ ଯେତେ ଅତିକ୍ରାନ୍ତ ହୋଇଥାଏ ପଥ,
ଦୂର ସ୍ତୂପଯାକ ହୁଏ ପର୍ବତ ନିକଟେ ।
ମନେହୁଏ ଅତିକ୍ରମ୍ୟ ନୁହେଁ ଏ ସମସ୍ତ,
ଅଗ୍ରସର ଅସମ୍ଭବ ଏ ବାଧା ନିରୋଧେ ।
ଲଭିବାକୁ ସହଯୋଗ ଏ ଦେଶବାସୀଙ୍କ,
ଦେଉଛନ୍ତି ପ୍ରଚୁର ଅର୍ଥ ବିଦେଶୀ ଶାସନ,
ବହୁଲୋକ ଅର୍ଥବଳେ ଦେଶର ବଇରୀ,
ଯେତେ ବଢ଼େ ଆନ୍ଦୋଳନ, ସେତେ ତାଙ୍କ ଲାଭ ।
ସମ୍ପ୍ରଦାୟେ ସମ୍ପ୍ରଦାୟେ ପରସ୍ପରେ କଳି,
ଲଗାଇ ବିଦେଶୀରାଜ ନିଏ ତା' ସୁବିଧା,
ସ୍ୱାଧୀନତା-ଆଶା-ତାରା ଅସ୍ପଷ୍ଟ ଆକାଶେ,
ଏ ସବୁ ସଙ୍କଟ ମେଘେ ଲୁଚିଯାଏ କାହିଁ ।
ମାତିଛନ୍ତି ଯେଉଁମାନେ ତବ ଅନୁଗାମୀ
ସ୍ୱଦେଶ ମୁକତି କରି ଜୀବନର ସବୁ,
ପଡ଼ୁଛନ୍ତି ଟିକେ ଯୁଝି ନିରାଶା ସହିତେ,

ପ୍ରତାପ ପବନେ ବାହ୍ନ ନ ପାରନ୍ତି ନାବ ।
ପ୍ରସ୍ତର ପ୍ରାଚୀର ଭେଦ ମସ୍ତକ ପ୍ରହାରେ,
ଅସମ୍ଭବ ନିରର୍ଥକ ବାତୁଳତା ମାତ୍ର ।
ମନେହୁଏ ସେହିପରି ସ୍ୱାଧୀନତା ଲାଭ
ଅସ୍ତ୍ରହୀନ ଶତ୍ରୁଠାରୁ ଆତ୍ମକ୍ଳେଶ ଦ୍ୱାରା ।

ସନ୍ନ୍ୟାସୀ—ତୁମେ ମୋର ପଞ୍ଚଶିଷ୍ୟା ବଶମ୍ବଦା ମଞ୍ଜରି,
ତୁମେ ଯେବେ ଧୈର୍ଯ୍ୟହରା ନିରାଶ ହୃଦୟ,
ବୁଝୁଛି ତା'ହେଲେ ଅନ୍ୟ ସମସ୍ତଙ୍କ ମନ,
କ୍ଳାନ୍ତ ଶ୍ରାନ୍ତ ସର୍ବେ ଦୀର୍ଘ ପଥ ଅତିକ୍ରମେ ।
ଜାଣ ତ ସୁଦୀର୍ଘ କେତେ ଜାତିର ଜୀବନ,
ପ୍ରବାହିତ କେଉଁକାଳୁଁ ଶତଯୁଗ ବ୍ୟାପୀ,
ବହିବ ବା କେତେ ଯୁଗ କଳ୍ପନା ଅତୀତ ।
ବୁଦ୍‌ବୁଦ ପରି ଏ ତହିଁ ବ୍ୟକ୍ତିଗତ ପ୍ରଶ୍ନ,
ଲୀନହୁଏ ନିମିଷକେ ଅଜଣା ଅଶୁଣା,
ତଥାପି ସାଧଇ ସେହି ବୁଦ୍‌ବୁଦ ତା କାର୍ଯ୍ୟ ।
ଆଜୀବନ କରି ମୁହିଁ ମୁକ୍ତିର ସାଧନା,
ଗୁରିଆଡ଼େ ଘେରି ଯେବେ ଦିଶଇ ବ୍ୟର୍ଥତା,
ପ୍ରତିକାର ପନ୍ଥା ମୋତେ ଦିଶେ ଏକମାତ୍ର,
ଦେଶହିତେ ଆତ୍ମଦାନ ଅବଶ୍ୟ କର୍ତ୍ତବ୍ୟ ।
ଦେଇଛି ମୋ ସବୁ ସେହି ସ୍ୱଦେଶ ଉଦ୍ଧାରେ,
ରହିଛି ଜୀବନ ଖାଲି ଏ ଶରୀର ଧରି ।
ସେହିଟିକ ସମର୍ପିବି ସ୍ୱଦେଶ କଲ୍ୟାଣେ,
କରିବି କର୍ତ୍ତବ୍ୟ ସାଙ୍ଗ କ୍ଷୁଦ୍ର ବୁଦ୍‌ବୁଦର ।

ମଞ୍ଜରୀ—ନ ହୁଅନ୍ତୁ, ଗୁରୁଦେବ, ଏତେ ବିଚଳିତ,
ନ କରନ୍ତୁ ଏତେ ଗୁରୁ ସିଦ୍ଧାନ୍ତ ସହସା ।
ରହିଛନ୍ତି ଶତ ଶତ ତବ ଅନୁଗାମୀ,
ଇଙ୍ଗିତ ମାତ୍ରକେ ଦେବେ ଜୀବନ ବିହାଇ,
ପ୍ରକ୍ଷାଳନେ ସ୍ୱଦେଶର ବନ୍ଧନ କାଳିମା ।
କର୍ତ୍ତବ୍ୟ-ନିର୍ଣ୍ଣୟେ ତାଙ୍କ ତୁମେ ଧ୍ରୁବତାରା,
ବୁଡ଼ିଗଲେ ସେହି ତାରା ହରାଇବେ ଦିଗ,
ନ ପାଇବେ କୂଳ କେହି ଅକୂଳ-ସାଗରେ ।
ସଗଣିବ ସ୍ୱାଧୀନତା ଆନ୍ଦୋଳନନାୟକ,
ଦବଗିବ ମନ ସବୁ ଅନୁଗାମୀଙ୍କର ।
ସନ୍ନ୍ୟାସୀ—ନୁହେଁ ମୋ ସିଦ୍ଧାନ୍ତ କେବେହେଁ ନିରାଶା ପ୍ରସୂତ,
ହତାଶାର ଛାୟା ସୁଦ୍ଧା ନ ପଡ଼େ ମୋ ମନେ ।
ଉଠିଲେ ଗୋଟିଏ ପାଦ ଅନ୍ୟପାଦ ଯଥା,
ଜାଣିନାଏ କେତେବେଳେ ପଡ଼ିବ କେଉଁଠି,
ସେହିପରି ଆପେ ଆପେ ଜଣାଯାଏ ମୋତେ,
ଆତ୍ମଦାନ ଆନ୍ଦୋଳନେ ପର ପଦକ୍ଷେପ ।
ଭେଦିବାକୁ ହେବ ଶତ୍ରୁ ନିଷ୍ଠୁର ହୃଦୟ,
ତଥା ନିଜ ଭାଇଙ୍କର ସ୍ୱାର୍ଥ-ଆବରଣ ।
ଦେବ ମୁଁ ନିଜକୁ ବଳି ପ୍ରଫୁଲ୍ଲ ଅନ୍ତରେ,
'ବନ୍ଦୁ ବନ୍ଦୁ କର ସେହି ଭାବ ଉଦ୍‌ବୋଧନେ,
ରହିଛି ଯା' ଲକ୍ଷ ନର ହୃଦୟ ଗହ୍ୱରେ,
ବହୁ ଆବରଣ ତଳେ ଅତି ସଂଗୋପନେ ।
ତା' ଛଡ଼ା ନ ଅଛି ପନ୍ଥା ଅନ୍ୟ କେଉଁଦିଗେ,
ସ୍ୱରସ୍ତ୍ର ଏ ଜନ୍ମଭୂମି ମୋଚନ ବିଧାନେ ।

ମଞ୍ଜରୀ—ନ ଶୁଣୁ ଏ କାନ ଆଉ ସେ କଠିନ ବାଣୀ,
ଥରିଯାଏ ଛାତି ମୋର ଶୁଖିଯାଏ ମୁହଁ ।
ଶତ ଶତ ପ୍ରାଣ ଏହି କ୍ଷୁଦ୍ରପ୍ରାଣ ସହ
ପଡ଼ିଯିବ ବଳି ତବ ଆଦେଶ ମାନଲେ ।
ରହିବେ ଆପଣ କନ୍ତୁ ସରସ ସବଳ,
ସୁବର୍ଣ୍ଣ ନଗର ଆଶା ଜୀବନ୍ତ ପ୍ରତୀକ ।
ବୁଡ଼ିଗଲେ ସୂର୍ଯ୍ୟ ଦେଶ ପଡ଼ିବ ଅନ୍ଧାରେ,
କେତେ କାଳ ପାଇଁ ଅହୋ ନ ଯାଏ କଳ୍ପନା ।
ସନ୍ନ୍ୟାସୀ—ଜନ୍ମିଛୁ ଯେତେବେଳେ ମରଣ ନିଶ୍ଚିତ,
ଧନେହେଲେ ଜରା ବ୍ୟାଧି ନେବ ଏ ଶରୀର,
ଅନିଚ୍ଛା ମରଣ ଠାରୁ ମରଣ ବରଣ,
ଶ୍ରେୟସ୍କର ସବୁବେଳେ ମହାକାର୍ଯ୍ୟ ପାଇଁ ।
ସୁସ୍ପଷ୍ଟ କର୍ତ୍ତବ୍ୟ ପଥ ଦିଶୁଛି ଅଗ୍ରତେ,
ଯିବି ମୁଁ ଆଗେଇ ତହିଁ ଉଠାଇଲେ ପଦ ।
ଅସ୍ତ୍ରବଳେ ବଳୀ ଆଜେ ନିରସ୍ତ୍ର ଜନତା,
ରହିପାରେ ମୁଣ୍ଡେଙ୍କ ଉପରେ ଜଗତେ,
ଦେଖାଇବ ସେହି ବାଟ କାଳ କାଳ ପାଇଁ,
ନୂଆ ଏକ ଅସ୍ତ୍ର ଦେବ ନିରସ୍ତ୍ରଙ୍କ ହାତେ ।
ଆତ୍ମଦାନ ନାମେ ଯାହା ହେବ ସୁବିଦିତ,
ଯାହା ଆଗେ ପଶୁବଳ ହେବ ଅପଦସ୍ଥ ।
ନଜାଣେ ହେବ କି ନାହିଁ ସଫଳ ମୋ କାମେ,
ପାରିବି କି ନାହିଁ ଛୁଇଁ ଶତ୍ରୁଙ୍କ ହୃଦୟ ।
ତଥାପି କାହିଁକି ବାଟ ଅଜଣା ଭାଇଜେ,
ଅନୁସରି ଯା'ଙ୍କୁ ପଛେ ନିସ୍ୱ ଦୁର୍ବଳ,

ଈଶ୍ୱର ଈଙ୍ଗିତ ଅଟେ ନ ନୁଅାଁଇ ମୁଣ୍ଡ,
ଅଟେଇବେ ଆଶାଭରେ ଆମ୍ଭବଳେ ମାତ ।
ମନୁଷ୍ୟ—ସାମାନ୍ୟ ମୁଁ ନ ବୁଝଇ ପୁରା ଏହି ତତ୍ତ୍ୱ,
ଧୀରେ ଧୀରେ ଅନୁସରି ତବ ପଦଅଙ୍କ,
ଦେଖିବି କି ଯୋଗ୍ୟ କି ନୁହେଁ ସେ ମହାଭାଗ୍ୟର
ହେବାକୁ ବଶମ୍ବଦ, ପୂର୍ଣ୍ଣ ତବ ସନ୍ନ୍ୟାସୀ ।

---

# ଗ୍ରାମବାସୀଗଣ

ପଧାନ୍—ଦେଖୁଛ ନାଁ ମହାପାତ୍ରେ ଗାଁ ଗଣ୍ଡଗୋଳ,
ଦାସପୁଅ ଏ ସବୁର ମୂଳ ମୋତେ ଜଣା ।
ମେଳବାନ୍ଧି ଗାଁବାଲା ଭେଲାଇ ସଭିଙ୍କୁ,
ବିଲ ଡାଙ୍ଗ କାମ ମୋର କରିଛନ୍ତି ବନ୍ଦ ।
ନ ମିଳେ ମୂଲିଆଟିଏ ବିଲ ବାଛୁବାକୁ,
କେବଳ ସେତିକ ନୁହେଁ, ଶୁଣ ମହାପାତ୍ରେ,
ସିତାରିଖି ନେଇଗଲେ ବୋହି ଧାନଗଦା,
ପୋଡ଼ିଦେବେ କାଲି ଘର ଡର ମାଡ଼େ ମୋତେ ।
ମହାପାତ୍ରେ—କହିବ କାହାକୁ କଣ ବୁଝିବ ବା କିଏ ?
ଯେ ଯା' ହାତେ ତେଜଦପା ଆଜିକାଲି ସବୁ,
ପୁରୁଣା ବୋଲି ତ କେହି ନ ମାନେ କାହାକୁ,
ଦୁନିଆର ଗତି ଦେଖି ନ ବାହାରେଁ ଘରୁ ।
ପଧାନ—ଦେଶକାମ ଦେଶକାମ କରୁଛନ୍ତି ହୁରି,
ଏହି କଣ ଦେଶକାମ ବେଶ୍ ଉକାଯୁତ ।
ବିଦେଶୀ ନୁହେଁ ମୁଁ ଜଣେ ଏହି ଦେଶବାସୀ,
ଦେଶ କି ତାଙ୍କର ଖାଲି, ନୁହେଁ କି ମୋହର ?
ମହାପାତ୍ରେ—ଦୁନିଆର ଗତି ଦେଖି ଠାକୁର ପଥର,
କହିବାକୁ ଅଛି ସେଥି ମଣିଷର ସାଧ ।
ନାଆଁ ଶୁଣି ପଧାନଙ୍କ ଲାଜୁଥିଲେ ସବୁ,
ସେହି ପୁଣି ବଳାତ୍କାର ଏବେ ପଧାନଙ୍କୁ ।

ପଧାନ—ଅନ୍ୟାୟକୁ ବଳ କା'ର କହ ମହାପାତ୍ରେ,
ନ୍ୟାୟରେ ଲଗିଲେ କେହୁ ଦଅନ୍ତ ଦେଖାଇ,
କାହାର କେତେ ବା ବୁଦ୍ଧି, ବୁଝିଥାନ୍ତେ ମଜ୍ଜା ।
ନ ପାଉଛୁ ବଳ ଯହିଁ ଅନ୍ୟାୟ ପ୍ରବଳ ।
ବୁଝାଇ କହ ସଭିଙ୍କୁ କାହିଁକି ସେମାନେ,
ଲଗିଛନ୍ତି ମୋ ସାଙ୍ଗରେ ଅନ୍ୟାୟେ ଏପରି ।
ମହାପାତ୍ରେ—କର୍ଣ୍ଣପରି ମହାରଥି ଅନ୍ୟାୟ ସମରେ,
ହାରିଗଲା ନ ପାରିଲା ଗଲା ତା' ଜୀବନ ।
ଅଭିମନ୍ୟୁ ପରି ବୀର ନ ପାରିଲା ଠେକି,
ଅନ୍ୟାୟ ସମର ଯେବେ କଲେ ସପ୍ତରଥୀ ।
ଅନ୍ୟଥା କି ହେବ କେବେ ପୁରାଣ ବଚନ,
କହୁଛ ପଧାନେ ଯାହା କଥା ସବୁ ସତ ।
ପଧାନେ—ବୁଝୁଛ ତ ମହାପାତ୍ରେ କପରି ଅନ୍ୟାୟ,
କରୁଛନ୍ତି ଗାଁବାଲା ହୋଇ ଅମାନିଆ ।
ନ୍ୟାୟରେ ପକାଇ ଥିଲା ତାକୁ ସାହୁପୁଅ,
ଦେଖିଛ ତ ଜିତିଲି ମୁଁ ସେଥିରେ କପରି ?
ଜଣ ଜଣ କରି ଲଢ଼ ଜଣକ ସହିତେ,
ଦେଖିବ କାହାର କେତେ ଅଛି ବୁଦ୍ଧି ବଳ ।
ଆଖି ପିଛୁଳାକରେ ଦେବ କୁଆଡ଼େ ଫୋପାଡ଼ି ।
ସବୁ ମିଶି ଲଢ଼ୁଛନ୍ତି ଜଣକ ସହିତେ !!
ମହାପାତ୍ରେ—ଶୁଣିଛ ନାଁ କହୁଛନ୍ତି ସେମାନେ କଅଁଣ ?
ଘରେ ବସି ବେଳେ ବେଳେ ଶୁଣେ କେତେ କଥା ।
କହୁଛନ୍ତି ଦୁଇଦେଶେ ଲାଗିଛି ଲଢ଼ାଇ,
ସୁବର୍ଣ୍ଣ ନଗର ଆଉ ମାୟାପୁରୀ ରାଜ୍ୟ ।

ସୁବର୍ଣ୍ଣ ନଗର ଲୋକ କେହୁ ଯେବେ କାହିଁ,
ମିଶିଲେ ସେ ମାୟାପୁରୀବାଲାଙ୍କ ସହିତେ,
ତେବେ ସେ ହୋଇଲେ ଦ୍ରୋହୀ ଦେଶର ଆମର,
ନ ଅଛୁ ତା' ସଙ୍ଗେ କିଛୁ ଆମ କାରବାର ।
ତୁମେ ଯେ ପଧାନେ କର ସରକାରୀ କାମ,
ସେଥିପାଇଁ ଗାଁଅବାଲା କରନ୍ତି ଅଟକ ।
ଜଣାନାହିଁ ମୋତେ କିଛୁ ନ କହନ୍ତି କେହୁ,
ଭିତର କଥାତ ମୋତେ, ସବୁ ଅନୁମାନ ।
ପଧାନେ—ସେହି ଯଦ କଥା ତେବେ ଯାଉଛୁ ଉଠୁଣି,
ଦେବି ମୁଁ ଖବର ଆମ ବିଜସୁକୁମାରେ,
ଦେଖାଯିବ କେତେ ବଳ ଅଛୁ ବା କାହାର
ଏକଲା ଦାଢର ଅବା ପଲେ ଭେଡ଼ିଙ୍କର ।
ମହାପାତ୍ରେ—କଥାରେ କହନ୍ତି ଜାତ ହାତୀଠାରୁ ବଡ଼,
ଡରନ୍ତି ରଜାଏ ଦେଶମେଳକୁ ସେହେତୁ ।
ପୁରୁଣା ସେ କଥା ଅତ ନୂଆ ଏ ଦୁନଆ,
ନ ଖାଇବ ଖାପ ପଶ୍ର ଆଜକାଲ୍ ତାହା ।
ପଧାନେ—କି ମେଳ ଦେଖାଉଛନ୍ତି ମୂର୍ଖ କେତେଜଣ,
ଏକାଥରେ ଦବିଯିବେ ପାହାର ବସିଲେ ।
ପଛ କଥା ସେତ ଆଜି ବୁଝାଅ ସଭିଙ୍କୁ,
ଅକାରଣେ କାହିଁପାଇଁ ଅଟକାନ୍ତି ମୋତେ ।
ଉଜୁଡ଼ ଯାଉଛୁ ବିଲ, ଘରେ ଗୋରୁଗାଈ,
ନ ପାଆନ୍ତି କୁଣ୍ଡା ପାଣି ଅକଡ଼ା ଗୁହାଳ ।
ନ ଆସେ ଭଣ୍ଡାରି ଦେଖ ବଢ଼ିଛୁ ଏ ରୁଢ,
ପଡ଼ୁଛୁ ମଇଳା ଲୁଗା ନ ଆସୁଛୁ ଧୋବା,

ଗାଁର ଚଢ଼େଇ ଘୁଷ୍ମା ନ ଆସେ ପାଖକୁ,
ଉଚିତ କି ମୋ ସହିତ ଏପରି ବେଭାର ?
ଶୁଣୁଛି ଖବର ଉଡ଼ା, ଘେରିବେ ମୋ ଘର,
ନେଇଯିବେ ସବୁ ବହି ମାରିଦେଇ ମୋତେ ।
ସେହି ଭୟେ ସବୁବେଳେ କଳିଦେଇ ଦ୍ୱାର,
ରହିଛନ୍ତି ଘର ଲୋକେ ପରାଣ ବିକଳେ ।
ଭାବିଲି ତୁମେହିଁ ଜଣେ ବୁଝା ସୁଝା ଲୋକ,
କହିଲେ ବୁଝାଇ ଦେବ ଗାଁବାଲାଙ୍କୁ ଡାକ ।

ମହାପାତ୍ରେ—ପଧାନେ କହୁଛ ଯିନା ପରୁଖା ମୁଁ ବୋଲି,
ମାନୁଛି କଏସେ ମୋତେ ଶୁଣୁଛି ବା କଏ ।
ବୁଝାଇଲି ସାହୁପୁଏ କେତେ ଭାନ୍ତି ଜାଣ ।
ନ ଶୁଣିଲ କଥା ମୋର ଶେଷେ ଗଲା ଜେଲ ।
ତୁମକୁ ବି କଲି ଶାନ୍ତ ନ ଶୁଣିଲ ତୁମେ,
କିବା କଥା ବଡ଼ କଲ ଦେଲ ଅକାରଣେ ।
ତୁମେ ହେଲ ସରକାର ଛୁଡ଼ା ଗୋଟେ ପାଖେ,
ଅନ୍ୟ ଆଉ ଦେଶ ଲୋକେ ହୋଇଗଲେ ଛୁଡ଼ା ।
ଭାଜନ କି ଏ ଗରିବ ବନ୍ଦ କରିବାକୁ,
ମହାଭାରତ ଲଢ଼ାଇ କରୁପାଣ୍ଡବଙ୍କ ।
ସହିଲେ କହଲି ତେଣୁ ରହିଯାଅ ଦଣ୍ଡେ,
ଦେଖ ଗୁହିଁ କେଉଁ ପାଣି ଯାଏ କୁଆଡ଼କୁ ।
ନନେଇ ଥାଆନ୍ତ ତୁମେ ସରକାରୀ କାମ,
ନ ମିଶି ଥାଆନ୍ତେ ଲୋକେ ସନ୍ନ୍ୟାସୀର ଦଳେ,
ନେତେବେ ତ ନିଶ୍ଚିନ୍ତ ଥାନ୍ତା ଆମରି ଏ ଗ୍ରାମ,
ହୋଇଥାନ୍ତା ଏଠି ଯାହା ହୁଅନ୍ତା ଆଉଟିଁ ।

ନକ ଗୁଡ଼ କହୁଣିକୁ ଆସିଲଣି ବହି,
କି ହେବ ମୋ ଯୋଗେ ଆଉ ଉଚ୍ଛୁଣି ପଧାନେ ?
ଏତେବେ ଛେଦ ଗୁଡ଼ଦିଅ ସରକାରୀ କାମ,
ବୁଝାଇ ସୁଝାଇ ମେଳ ଭାଙ୍ଗିଦେବ ମୁହିଁ ।
ପଧାନେ—ବୁଝିଲି ମୁଁ ସବୁ ଏବେ ତୁମେ ମହାପାତ୍ର,
ଏ ଗଣ୍ଡଗୋଳର ମୂଳ ଆମ ଏ ଗାଆଁର ।
ଚପି ଚପି କଥା କହୁ ଶିଖାଇ ମୁହିଁକୁ,
ଲୁଚି ଖାଲି ଭରୁଅଛୁ ଅନ୍ତରେ ତୁମର ।
ଛାଡ଼ିଲେ ସର୍କାରୀ କାମ ଉଠିବ ବାହାନ୍ଦ,
ବାଟଗଲା ଲୋକ ସୁଦ୍ଧା କହିଦେବ ତାହା ।
ନ ଥିଲି ମୁଁ ଆସି ଏହି ପରାମର୍ଶ ପାଇଁ,
ଅତି ପିଆଣିଆ ପରା ମେଳର ସର୍ଦ୍ଦାର ।

ମହାପାତ୍ରେ—ରାଧେକୃଷ୍ଣ, ରାଧେକୃଷ୍ଣ, ଜୁହାର ପଧାନେ,
ରହିଲା ମୋହରିଁ ମୋର ପୁରୁଖା ପଣିଆ,
ଏଥି ପାଇଁ ନ ଯାଏ ମୁଁ ଗୋଡ଼ କାଢ଼ି କେଣେ,
ବସିଥାଏଁ ମୋ ପିଣ୍ଡାରେ ହରିନାମ ଜପି ।
ଅକାରଣ ଦୁରୁଛୁଣା ଦେଉଛ ପଧାନେ,
ଜଗନ୍ନାଥ ପ୍ରଭୁ ମୋର ବୁଝିବେ ସେ ସବୁ ।
ପଧାନେ—ରହିଥା ବୁଝିବେ ତୋ'ର ଜଗନ୍ନାଥ ସବୁ ।
ଫେରିଆସେଁ ବିଜୟୁଙ୍କ ଘୁମୁରୁ ମୁଁ ଖାଲି ।
ପୋଡ଼ିଥିଲା ହନୁମାନ ଲଙ୍କା ଯେଉଁପରି,
ସେହିପରି ପୋଡ଼ାଇବି ଗାଁଯାକ ମୁହିଁ ।
ନ ରହିବ ଦୁବ କେରେ ଜିଅନ୍ତା ଗାଆଁରେ,
ନାଆଁ ନୁହେଁ ମୋର ଯଦି ନ କରିଛୁ ଏହା ।

# ମିହିର ଓ ମଞ୍ଜରୀ

ମିହିର—ଜୀବନ କି ଖାଲି ସେହି ଦେଶଦଶ ଚିନ୍ତା,
ନାହିଁ କିଛି ସେଥି ଆଜି ଅଧିକ ସରସ ?
ବହୁଛି ଯେ ସମୀରଣ ଜଗତ କଲ୍ୟାଣେ,
ଦିନ ରାତି କରି ଚେଷ୍ଟା ଚରାଚର ସୃଷ୍ଟି,
ନାହିଁ କି ସମୟ ତା'ର ଫୁଟିଲି ଫୁଟିଲି ଯାଇ,
କହିବାକୁ ଚୁପୁଚୁପୁ ଗୋପନ କାହାଣୀ,
ଶୁଣି ଯା' କୁସୁମ ରାଣୀ ହୋଇଣ ଅଧୀର,
ଆନନ୍ଦେ ଦୋହଲିଯାଏ ନିଜ ବୃନ୍ତ ପରେ,
ହସି ହସି ଗଡ଼ିଯାଏ ହୋଇ ଆତ୍ମହରା,
ପଲାଶ ଅଧର ଦିଏ ଯତନେ ବଢ଼ାଇ ।
କର୍ମ୍ମ-ମୟ ମରୁଭୂମି ଶୁଷ୍କ ଏ ସଂସାରେ,
ନୈରଞ୍ଜନା ନଦୀ ପରି ବହେ ଅନ୍ତ ସ୍ରୋତା,
ସରସ ମଧୁର ଧାରା ଚିର ଅବଗାହୀ
ନ ହୁଏ ବିଶୁଷ୍କ ଯେହୁ ଶତ କର୍ମ୍ମ ତାପେ ।
ଗୁହେଁ ମୁଁ ନିବାରିବାକୁ ଅଦମ୍ୟ ପିପାସା,
ପହୁଞ୍ଚି ସେ ସ୍ରୋତ ପାଶେ ହୃଦୟ ମନ୍ଦିରେ,
ଭେଦି ସାନ୍ଦ୍ର ଅଶ୍ମମୟ କର୍ମ୍ମ-ଆବରଣ
କରିଛି ବାହ୍ୟତଃ ଯାହା ହୃଦୟ କଠିନ ।

ମଞ୍ଜରୀ—ଅନାହାରେ ଜର ଜର ପରାଧୀନ ଦେଶେ,
ଅଛି କି ସରସ କିଛି ? ସମସ୍ତ ବିଶୁଷ୍କ ।

ଉଡ଼େ ଯେବେ ହୃଷ୍ଟପୁଷ୍ଟ ବନ ପକ୍ଷୀ ନଭେ,
ଦିଶଇ ଜଗତ ତାଙ୍କୁ ସରସତା ଭରି,
ପୁଲକିତ ମନେ ଗାଏ ସୁମଧୁର ଗାନ,
ଯେଣେ ଗୃହେଁ ତେଣେ ଦିଶେ ଆନନ୍ଦ ପସରା ।
ଅହର୍ନିଶେ ପିଞ୍ଜରାରେ ରହୁଛି ଯେ ପକ୍ଷୀ,
ଯାଉଛି ତା' ମନ ମରି ଆକାଶ ଗମନେ,
ମଣଇ ଜଗତ ସେତୁ ବିଶାଳ ବନ୍ଧନ !
ନିରାନନ୍ଦ ପୂର୍ଣ୍ଣ ଶୁଷ୍କ ଊଷର ସମାନ ।
କରେ ଯେବେ ମନ କେବେ ଆନନ୍ଦ ସମ୍ଭୋଗେ,
ଖୋଜିବୁଲେ ବାଟ ଗୃହପାଶେ ସେ ପିଞ୍ଜରେ,
ଆକୁଳ ପରାଣେ ଚଞ୍ଚୁ ମାରି ଲୁହା ତାରେ,
ଲଭଇ ଆଘାତ ଖାଲି ବିଫଳ ପ୍ରଯତ୍ନେ ।
ରହୁଛି ସରସ ଧାରା ଫସାରେ ମୁକର,
ପ୍ରତିହତ ମାନ ତାହା ନିର୍ଯାତିତ ଜନେ ।
ଗୃହଆଡ଼େ ହାହାକାର ବୁଭୁକ୍ଷୁ ଚିତ୍କାର,
ଅଧୀନତା ଜର୍ଜ୍ଜରିତ ଦେଶର ଉଚ୍ଛ୍ୱାସ,
ଅସହ୍ୟ ହୃଦୟୀ ପକ୍ଷେ ସହନ ଶ୍ରବଣ,
ଅବସର କାହିଁ ଖୋଜି ପାଇବାକୁ ଧାରା ?

ମିହିର—କେଜାଣେ କାହିଁକି ମନ କହୁଛି ମୋହର,
ରହୁଛି ସେ ପ୍ରସ୍ରବଣ ତୁମରି ହୃଦୟେ,
ଯାହାର ସଲିଳ ପାନେ ତୃଷାର୍ତ୍ତ ଏ ପ୍ରାଣ,
ହେବ ସୁଶୀତଳ ଶାନ୍ତି ମିଳିବ ଜୀବନେ ।
ସେଥିପାଇଁ ଧାଇଁଛି ମୁଁ ଆକୁଳ ପରାଣେ,
ପିପାସିତ ପଶୁପରି ନ ମାନି କାହାକୁ ।

ମଞ୍ଜରୀ—ଶିଶୁର ଜନମେ ମାତା ନ ଲଭେ ଆନନ୍ଦ,
ମନେ କରେ ଗଳ ଗ୍ରହ ପୋଷଣ ଅଭାବେ,
ଜୀବନ ଆରମ୍ଭୁଁ ହୁଏ ମରଣ ଗଣନା,
ନାହିଁ ବୋଲି ବଞ୍ଚିବାକୁ କିଛି ପ୍ରଲୋଭନ,
ଅଶିକ୍ଷା କୁଶିକ୍ଷା ଫଳେ ମଣେ ଦେଶବାସୀ,
ଦୁରବସ୍ଥା ତା'ର ପୂର୍ବ ଜନ୍ମ ପରିଣାମ,
ଖଟି ଖଟି ଦିନରାତି ବରଷା ଗ୍ରୀଷମେ,।
ଅର୍ଦ୍ଧାଶନେ ରହି ନିଜେ ପୋଷେ ଅପରଙ୍କୁ,
ନ ସହି କରେ ସେ ଯେବେ କିଛି ପାଟି ତୁଣ୍ଡେ,
ବହିଯାଏ ଦମନର ଝଡ଼ ତା' ମସ୍ତକେ,
ଲାଗେ କି ମନକୁ କେବେ ଦେଶର ଏ ଦଶା ?
ହୁଏ କି ଆକୁଳ ପ୍ରାଣ କେବେ ପ୍ରତିକାରେ ?
ବୁଝିଛି ସରଳ ପ୍ରାଣ କୋମଳ ତୁମର
ଡାକୁଛି ବାଳିକା ପ୍ରତି ନିର୍ମ୍ମଳ ପ୍ରଣୟେ,
ଜାଣ ତ ପୃଥକ କେତେ ଦୁହିଙ୍କ ଜୀବନ,
ଅସମ ଦୁଇଟି ବସ୍ତୁ ମିଳିବ କିପରି ?

ମିହିର—ମନେ ଅଛି ସେହିଦିନ ସେ ଗ୍ରାମ ଘଟଣା,
ମାରି ଭୟେ ଅସ୍ତ ବ୍ୟସ୍ତ ଗ୍ରାମବାସୀଗଣେ,
ରାଜଦେୟ ଆହରଣେ ତତ୍ପର ନିର୍ମ୍ମମ.
କର୍ମ୍ମଗୃସ୍ରୀବର୍ଗ ଯେବେ ଦେଉଥିଲେ ପୀଡ଼ା,
ସେବା ପରାୟଣା ତୁମେ କାହୁଁ ଆସି ସେଠି,
ପହଞ୍ଚିଲ ପ୍ରଜ୍ୱଳିତ ତାରାପରି ନଭେ,
କରୁଣ କ୍ରନ୍ଦନ ତବ ଶୁଣି ଏ ଶ୍ରବଣେ
ସେହିଦିନ ସେହିକ୍ଷଣି ଚେତିଲି ସେ କାର୍ଯ୍ୟ,

କଲ୍ ଶେଷ ରାଜକାର୍ଯ୍ୟ ଏ ଜୀବନ ପାଇଁ ।
ସେହିଦିନୁଁ ଅନୁସରି ମହାନ୍ତ ଆଦର୍ଶ,
କରୁଛୁ ମୁଁ ସେବାକାର୍ଯ୍ୟ ଦୁଃସ୍ଥଙ୍କର କଷ୍ଟ ।
ସେତେବେଳେ ଦେଖି ତୋତେ କଲି ନମସ୍କାର,
ଭକ୍ତିଭାବେ ନଇଁଗଲା ସମସ୍ତ ହୃଦୟ ।
ଧୀରେ ଧୀରେ ପରିଚୟ କରିବାଂ ସ୍ପର୍ଶ,
ଦେଲା ବଦଳାଇ ଭକ୍ତି ଉଦ୍ଭଟ ପ୍ରଣୟେ ।
ଶୁଣେ ଯେବେ ତବ ବାଣୀ ପୂରିଯାଏ ମନ,
ଭକ୍ତିଭାବେ, ମନେହୁଏ କେତେ ମୁଁ ନିକୃଷ୍ଟ ।
ପୁଣି ଅମାନିଆ ମନ କରେ ଅଭିଳାଷ,
ହେବାକୁ ଜୀବନ ସାଥୀ ସମ୍ପଦେ ବିପଦେ ।
ଦାୟୀ ତୁମେ ଏଥିପାଇଁ ନ ଅଛି ସନ୍ଦେହ,
ପୂଜା ସ୍ଥାନୁଁ ଖସି ଆସି ତୁମେ ନିଜେ ନିଜେ,
ରଖିଲ ନିଜକୁ ନିଜେ ସମକକ୍ଷ ଭାବେ,
ହେଲା ସେହି ଭାବାନ୍ତର ବିକାଶ କାରଣ ।
ଥିଲି ଭୟ, ଦୂରୁଁ ଥାଇ କରୁଥିଲି ଭକ୍ତି,
ଆସିଲ ପାଖକୁ କପାଁ ଅକୁହା ଅପୂର୍ବ,
ନ ଦଅ କପାଇଁ ଧରା ଆସିଲ ଯଦବା,
ଦୁଇକୂଳ ଛାଡ଼ି ସିନା ଭାସିବି ସାଗରେ ।

ମଞ୍ଜରୀ—ମନେ ଅଛି ଠିକ ଠିକ ସବୁ କଥା ମୋର,
ଆସିଲି କପରି ଖସି ସେ ଉଚ୍ଚ ସ୍ଥାନରୁ,
ବସାଇ ଯେଉଁଠି ମୋତେ କରୁଥିଲ ଭକ୍ତି,
ଜାଣିଲି ମୁଁ ଯେବେ ଯୋଗ୍ୟା ନୁହେଁ ସେ ସ୍ଥାନର ।
ଓହ୍ଲାଇ ତଳକୁ ଯେବେ ଛିଡ଼ା ହେଲି ସଙ୍ଗେ,

ସମତଳେ ଜଳପରି ସ୍ଥିର ହେଲା ସ୍ନେହ ।
ଉଠେ ଯେ ତରଙ୍ଗ ମନେ ତବ ସ୍ୱାଭାବିକ,
ନ ଭାବି ନ ଉଠେ ତାହା ଏ ନାରୀ ହୃଦୟେ ।
ଉଠିଲା ମାନସେକ ଉର୍ମ୍ମି ପଡ଼ିଯାଏ ମନେ,
ଝେଳିଲେ ଚନ୍ଦ୍ରପରି ଏହି ଦେଶ ଦୁରବସ୍ଥା ।
ନାଶଯାଏ ଅଗ୍ନିଆଗେ ମୃତ୍ତ ବର୍ତ୍ତିକା
ଅଙ୍ଗେକାରେ ଗୁଳେ ଯାହା ଶାସନ ଛଳନେ ।
କଙ୍କାଳ ଫଟାଇ ଉଠେ ଯେ ଦୀର୍ଘ ନିଶ୍ୱାସ,
ଲାଗେ ସେ ଉତ୍ତାପ ଆସି ତରଙ୍ଗିତ ମନେ ।
ଉଠୁଁ ଉଠୁଁ ଉତ୍କଳିକା ହୋଇଯାଏ ବନ୍ଦ,
ଶୁଖିଯାଏ ଜଳ ଖାଲି ରହିଯାଏ ବାଲି ।
ଜାଣ ସେତେବେଳେ ଦେଖେଁ ତୁମକୁ କଭଳି ?
ନ ମଣ ଅନ୍ୟଥା ଯଦି କହେଁ ମନ କଥା ।
ସେତେବେଳେ ଦିଶ ତୁମେ ଦେଶ ଦ୍ରୋହୀପରି
କାଠ ହଣା! କୁରାଢ଼ିର କାଠ ବେଣ୍ଟପରି ।
ମିହିର—ସରଳ ହେଲେ କଥା କହୁଥାଅ ସବୁ,
ସୁଖ ଲାଗେ ଶୁଣିବାକୁ ତିରସ୍କାର ସୁଦ୍ଧା,
ବେଳାପରି ସହିବି ମୁଁ ତରଙ୍ଗ ଆଘାତ,
ହେଉ ଯେତେ ବେଗ ତା'ର ଅବା ସଂଖ୍ୟା ଯାହା ।
ମଞ୍ଜରୀ—ସତ କହେଁ ଶୁଣ ଯୁବା ନୁହେଁ ଏ ସମୟ,
ପ୍ରେମାଳାପେ ଭୁଲିବାକୁ ଦେଶର ଆହ୍ୱାନ ।
ଜାଣ ତୁମେ ଗୁରୁ ଆମ କରିଛନ୍ତି ପଣ,
ଆମରଣ ଉପବାସେ ଦେବାକୁ ଜୀବନ ?
ସେ ଦିବ୍ୟ ଆହୁତି ପାଇ ମୁକ୍ତି ଆନ୍ଦୋଳନ,
ଜାଣେ ନାଁ କହୁଁ ସେ ଉର୍ଦ୍ଧ୍ୱେ ଉଠିବେ ପାରକ ।

ଏତକ ନିଶ୍ଚିତ ମାନ ଜାଣୁଛି ମୋ ମନ,
ଆମରଣ ଅନୁଗାମୀ ଗୁରୁଙ୍କ ଏ ଶିଷ୍ୟା ।

ମିହିର—କି ହେତୁ ସନ୍ନ୍ୟାସୀ କଲେ ଏ ଭୀଷଣ ପଣ,
ଦେଶ-ଆଶା-ରବି ସିନା ହେବେ ଅସ୍ତମିତ !!
ହୋଇଥିଲେ ସୁଦ୍ଧା ତାଙ୍କି ଦମନ-ଜଳଦେ,
ହେଉଛି ତଥାପି ଏହି ଦେଶ ଆଲୋକିତ,
ଅସ୍ତ ଗଲେ ସିନା ମାଡ଼ି ଆସିବ ରଜନୀ,
ବଢ଼ିଯିବ ବହୁଗୁଣେ ମେଘ ଅନ୍ଧକାର !!!

ମଞ୍ଜରୀ—କି ଅଛି ଉପାୟ ଆଉ ନୈତିକ ସମରେ,
ଗୁଲିଛି ଯାହା ଏ ଦେଶେ ବନ୍ଧନ ମୋଚନେ ?
ସହିଲେ ବହୁତ କ୍ଳେଶ ଶତ ନରନାରୀ,
ଆପେ ଆପେ ବରିନେଇ ସ୍ୱଦେଶ କଲ୍ୟାଣେ,
ତଥାପି ଟଳିଲା ନାହିଁ ପାଷାଣ ହୃଦୟ,
ସ୍ୱଦେଶ ବିରୋଧୀ ବହୁ ଏ ଦେଶବାସୀଙ୍କ,
ଶତ୍ରୁ ସଙ୍ଗେ ସହଯୋଗ କରି ସ୍ୱାର୍ଥ ଆଶେ,
ସ୍ୱଦେଶ ବନ୍ଧନ ଡୋରି କରୁଛନ୍ତି ଦୃଢ଼ ।
କଠିନ ତପସ୍ୟା ବଳେ ସୁବର୍ଣ୍ଣ ନଗରୀ,
ହୃଦୟ ବିଜୟୀ ହୋଇ ଶେଷେ ହେବ ମୁକ୍ତ ।
ଶେଷ ଅଙ୍ଗ ତପସ୍ୟାର ଜୀବନ ଅର୍ପଣ,
ପରାଧୀନ ଦେଶେ ଦେଶ-ସେବକ ସୌଭାଗ୍ୟ ।

ମିହିର—ନୁହେଁ ମୁହିଁ ବାସ୍ତବିକ ତବ ସମସ୍କନ୍ଧ,
ବହୁ ଉଚ୍ଚେ ସ୍ଥାନ ତବ ଆରାଧ୍ୟା ରମଣୀ ।
ଖର୍ବ ହୋଇ ଭାବୁଥିଲି ଧରିବାକୁ ଚନ୍ଦ୍ର,
ନିର୍ବୋଧ ମୁଁ ନାହିଁ ମୋର ହିତାହିତ ଜ୍ଞାନ ।

ମଞ୍ଜରୀ—ନ ହୁଅ ଅସ୍ଥିର ବନ୍ଧୁ ଭାବ ଧୀରେ ସ୍ଥିରେ,
କର୍ତ୍ତବ୍ୟ ଆମର ଏହ ସଙ୍କଟ ସମୟେ ।
ଆଖି ଆଗେ ଅର୍ଦ୍ଧ୍ୟପର ମହତ ଜୀବନ,
ଦେଉଥିବ ଜଣେ ଦେଶ ମାତାଙ୍କ ସନ୍ତୋଷେ,
ଦେଖିବା କି ହୁରୁଁ ରହିଁ ସେ କରୁଣ ଦୃଶ୍ୟ,
କି ବୋଲି ବର୍ଣ୍ଣିବ ଇତିହାସ ଆମ କଥା ?
ଯାଉଛୁ ମୁଁ ଗୃହଅଡ଼େ ବୁଲି ଦେଶସାରା,
ଦେବ ଉଦ୍‌ବୋଧନ ସୁପ୍ତ ସ୍ୱଦେଶବାସୀଙ୍କୁ,
ଜାଗିବ ମାତିବ ଉଠି ବିଶାଳ ଏ ଦେଶ,
ଥରହର ଏକପ୍ରାନ୍ତୁ ଅନ୍ୟ ପ୍ରାନ୍ତ ଯାଏଁ ।
ଯେ ଦିନ ତପସ୍ୟା ସାଙ୍ଗ ହେବ ସନ୍ନ୍ୟାସୀଙ୍କ,
ମୁଦିବେ ଦୁଇଟି ଆଖି ଜୀବନ ଦାନାନ୍ତେ,
ସେହିଦିନ ଲାଗିଯିବ ହୁତାଶନ ଦେଶେ,
ଧାଇଁବ ଜନତା ଧରି ଜୀବନ ସ୍ୱହସ୍ତେ,
ଫିଙ୍ଗିବ କୌତୁକେ ତାଙ୍କୁ ସେମାନଙ୍କ ପରେ,
ଯେଉଁମାନେ ଦେଉଛନ୍ତି ଶତ୍ରୁଙ୍କୁ ସାହାଯ୍ୟ ।
ବାଳିଲେ ବହୁତ ପ୍ରାଣ, ଠେଲିବେ ସେମାନେ,
ହୋଇବ ଜାଗ୍ରତ ତାଙ୍କ ମନେ ଦେଶ ପ୍ରୀତି ।
ବ୍ୟସ୍ତ ହୋଇ ଅପସରି ନେବେ ସହଯୋଗ,
ନିସ୍ତବ୍ଧ ଅଚଳ ହେବ ମାୟାପୁରୀ ରାଜ ।
ସେହି ଯେ ଜୀବନ-ରାଜ୍ଜ ହେବ ନିକ୍ଷିପ୍ତ,
ଏ ନଗଣ୍ୟ ପ୍ରାଣ ହେବ ସେଥିରୁ ଗୋଟିଏ ।
ମିହିର—ତା' ଆଗୁଁ ଜୀବନ ଅନ୍ୟ ଯାଇଥିବ ଚାଲି,
କରିବାକୁ ସାଜସଜ୍ଜା ନୂତନ ଗୃହର,
ଅନୁଗତ ଭୃତ୍ୟପରି ରହିଥିବ ଚାହିଁ,
ସେବିବାକୁ ପଥଶ୍ରାନ୍ତା ଜୀବନ-ସ୍ୱାମିନୀ ।

ମଞ୍ଜରୀ—କ୍ଷାନ୍ତ ହୁଅ ନ କର ଟଗା ପ୍ରଲାପ ଏପରି,
ପ୍ରାଣ ଦେଇ ପରିହାସ ନୁହଇ ଉଚିତ ।
ମୂଲ୍ୟବାନ ପ୍ରାଣ ତବ ହେଉ ଦୀର୍ଘଜୀବୀ,
ଉପଭୋଗୁ ସ୍ୱାଧୀନତା ଆମ ମୃତ୍ୟୁ ଅନ୍ତେ ।
ନ ରହିଲେ କେହି ଫଳ ଭୋଗିବାକୁ ପରେ,
ନ ରହିବ ସ୍ପୃହା କର୍ମେ, ଉଦ୍ୟମେ ଉତ୍ସାହ ।
ଖଟାଅ ମସ୍ତିଷ୍କ ତବ ଯୋଜନା ରଚନେ,
ସାଧିବାକୁ ସର୍ବମୁଖୀ ସ୍ୱଦେଶ କଲ୍ୟାଣ ।
ପରାଧୀନ ବୋଲି ସିନା ରହିଛୁଁ ନିଶ୍ଚିନ୍ତ,
ଦାୟିତ୍ୱ ସଙ୍କୁଳ ବଡ଼ ପୂର୍ଣ୍ଣ ସ୍ୱାଧୀନତା ।
ଅଶିକ୍ଷା, ଦାରିଦ୍ର୍ୟ, କର୍ମ-ଉଦ୍ୟମ-ହୀନତା,
ନାଶିବାକୁ ହେବ ସବୁ ଗୋଟି ଗୋଟି କରି ।
ସଙ୍ଗଠନ ଶକ୍ତି ଲୋଡ଼ା ବିଶାଳ ସେ ପାଇଁ,
ନିଜକୁ ପ୍ରସ୍ତୁତ କର ଏ ସ୍ଥିତି ସକାଶେ ।
ମାତିଯିବା ଆନ୍ଦୋଳନେ ନୁହେଁ ତେତେ କଷ୍ଟ,
ଯେତେ ଏହି ସଙ୍ଗଠନ କାର୍ଯ୍ୟ ସୁକଠିନ ।
ମିହିର—ଗୁଳିଗଲେ ରତ୍ନ ଖାଲି ସୂତା ସିନା ହାରି,
ଉଡ଼ିଗଲେ ବାସ ଖାଲି କାଠ ତ ଚନ୍ଦନ ।
ମିଶିଯିବ ତୁମେ ଯାଇ ଅନନ୍ତ ଆକାଶେ,
ଉଜ୍ଜ୍ୱଳ ନକ୍ଷତ୍ର ହୋଇ ଚାହିଁବ ତଳକୁ,
ଚାହିଁବ ଉପରେ ଦୀର୍ଘ ନିଶ୍ୱାସ ପକାଇ,
ଅସମ୍ଭବ ତାହା ଏହି ଯୁବକ ଜୀବନେ ।
ଦେଶ ପାଇଁ ଆତ୍ମଦାନ କରିପାରେ ଯେଉଁ,
କରିପାରେ ଅବହେଳେ ତାହା ଏ ନିରାଶା ।

ବିଶ୍ୱାସଘାତକ କୁଳେ ଲଭିଛୁ ଜନମ,
ଲାଳିତ ସ୍ୱଦେଶ-ଦ୍ୱେଷ ପରିସ୍ଥିତି ମଧ୍ୟେ,
ନାହିଁକି ମୁଁ କେବେ କଥା ସମ୍ବନ୍ଧ ମଣି,
କୃତାର୍ଥ ଜୀବନ ଯାଁଙ୍କ ସ୍ୱଦେଶ ସେବାରେ ।
ଧୀରେ ଧୀରେ ଶୁଭେ ମୋତେ ଦେଶର ଆହ୍ୱାନ,
"ଦେଶ ଦ୍ରୋହୀ ପୁତ୍ର, କର ଶୀଘ୍ର ପ୍ରାୟଶ୍ଚିତ ।"
ଯାଉଛୁ ତଥିର ହୁଏ ପ୍ରକ୍ଷାଳନ ପାଇଁ,
ଲାଗିଛି କାଳିମା କୁଳେ ଯେ ଦେଶ ଦ୍ରୋହୀର । ( ପ୍ରସ୍ଥାନ )

ମଞ୍ଜରୀ—ଶାନ୍ତ ହୁଅ, ରହ କ୍ଷଣେ, ଶୁଣ ଥରେ କଥା,
ଅଧୀରତା ବିଳମ୍ବନୀୟ କର୍ତ୍ତବ୍ୟ ନିଷ୍ଠିୟେ ।
ଗଲେଗଲେ ନିମିଷକେ ହେଲେ ସେ ଅଦୃଶ୍ୟ,
କେବେଣେ ଗଲେ କାହିଁ ଗଲେ ନ କହିଲେ କିଛି !!
ଥର ଥର କମ୍ପା ମୋର ଥରୁଛି ହୃଦୟ,
ଅବସନ୍ନ କମ୍ପା ହୁଏ ମୋର ସବ ଗାତ୍ର ?
ନ ହେବ କି ପୁଣି ଦେଖା ପ୍ରିୟତମ ସହ,
ଏହି କି ମିଳନ ଶେଷ ଏ ଜୀବନ ପାଇଁ ?
ନ କହିଲ କପାଁ ପଦେ ସରସ ବଚନ ?
ମନଖୋଲି ନ ଦେଲ ବା ପ୍ରଣୟ ଉତ୍ତର ?
କୋମଳ କୁସୁମ ସ୍ନେହ କଲେ ସେ ଅର୍ପଣ,
କର୍ତ୍ତବ୍ୟ ଛୁରିକା ଯୋଗେ କଲ ତାକୁ ଛିନ୍ନ ।
ଅଢ଼େଇ ଦିନର ଏହି ନଶ୍ୱର ସଂସାରେ,
ନାହିଁ କି ମୁହୂର୍ତ୍ତେ ସୁଦ୍ଧା ପ୍ରଣୟ ସକାଶେ ?
ଜୁଏ ମେ ପାହାନ୍ତ ତାରା ବୁଡ଼ିଯିବାପାଇଁ,
ଉଜ୍ଜ୍ୱଳ କରଣେ କରୁ ପ୍ରଖର ରବିର,

ନାହିଁ କି ତାହାର ସ୍ଥାନ ଜଗତେ କେଉଁଠି ?
ନ ଗାଏ କି ସେ ତାହାଛି ସାହାନା ମଧୁର,
ପୂରାଇ ସ୍ୱର୍ଗୀୟ ଭାବେ ମାନବ ହୃଦୟ,
ଜଗାଇ ତହିଁଙ୍ଗ କୂଳେ ଆନନ୍ଦେ ଅପାର ?
ତେବେ କପାଁ ତୁଚ୍ଛ ବୋଲି ଏଡ଼ାଇଦେଲି ତାଙ୍କୁ ?
ନ ଚାହିଁଲି ଥରେ ତାକୁ ସୁସ୍ନିଗ୍ଧ ନୟନେ ?
ଅନ୍ତତଃ ଥରେ ମୁଁ ତାଙ୍କୁ ଭେଟିବି ଜୀବନେ,
କହିବି ଅଳପ ପ୍ରେମ ହୃଦୟ ପୂରାଇ,
କହିବି ମଧୁର ଭାବେ—'ଜାଣେ ଗୋ ଯୁବକ,
ଯେ ସ୍ୱରେ ହୋଇଛି ବନ୍ଧା ତବ ହୃଦ ଯନ୍ତ୍ର,
ସେହି ସ୍ୱରେ ବନ୍ଧା ଏହି ରମଣୀ ହୃଦୟ;
ଉଠିଛି ଯେ ତାନ ତହିଁ ସେହି ତାନ ଏଠି,
ଦୁଇଟି ହୃଦୟେ ଉଠେ ଏକହିଁ ଝଙ୍କାର' ।
ତାପରେ ବାଜିବ ବାଦ୍ୟ ଉଠିବ ସଙ୍ଗୀତ,
ପ୍ରେମର ମିଳନ ଗାଇ ଦିବ୍ୟ ଅଲୌକିକ ।
( ନୀରବ ରହି )

ଏତିକି ଦୁର୍ବଳ ଏହି ବାଳିକାର ମନ ?
ଅକାରଣେ ଭୁଲିଗଲି ତୁଚ୍ଛ ବସ୍ତୁ ପାଇଁ ।
ଅବହେଳି ସ୍ୱକର୍ତ୍ତବ୍ୟ ଏତେବେଳ ଯାଏଁ ।
ଭୁଲିପାଇ ସ୍ୱଦେଶର ଦାରୁଣ କଷଣ !!
ଗ୍ରାମେ ଗ୍ରାମେ ଘରେ ଘରେ କରିବି ପ୍ରଚାର,
ଶୁଣାଇବି ମୁଗ୍ଧ ଦେଶେ ଆତ୍ମଦାନ ମନ୍ତ୍ର ।
ଜଗାଇବି ସୁପ୍ତ ଜନେ ଅନୁଭବ ପାଇଁ,
ଜୀବନେ ଯେତିକି ସୁଖ ମରଣେ ସେତିକି ।

# ମିହିର ଓ ବିଜୟକୁମାର

ମିହିର—ଭାବ ଦେଖି ଥରେ ବାପା ଭବିଷ୍ୟତ ଗୃହିଁ,
ବର୍ଣ୍ଣିବ କି ବୋଲି ତବ କୃତ୍ୟ ଇତିହାସ !
ନିଜ ବଂଶଧର ତବ ପଢ଼ିଲେ ବୃତ୍ତାନ୍ତ,
ନୁଆଁଇବେ ଶିର ସରି ଯିବେଟି ସରମେ ।
ଦେଖାଇ ଅଙ୍ଗୁଳି ଲୋକେ ହସିବେ ଧିକ୍କାରି,
'ଏହି ସେ ସ୍ୱଦେଶଦ୍ରୋହୀ ବଂଶର ସନ୍ତତି ।'
ରଖିଯିବ ପିତା ଏହି କଳଙ୍କର ଦାୟ,
ଭୋଗିବାକୁ ଚିରକାଳ ଅପମାନ କୁଳେ ।
ବିଜୟକୁମାର—ମୂର୍ଖ ସେ ଯେ କରେ ବସି ଭବିଷ୍ୟତ ଚିନ୍ତା,
କାମଗନ୍ଧୀ ଇତିହାସ ଗତି ନିରୂପଣ ।
କରେ ରକ୍ଷା ସୁସମ୍ମାନ ବର୍ତ୍ତମାନ ଯାହା,
ପ୍ରତ୍ୟକ୍ଷ ସିଦ୍ଧିହିଁ ଧ୍ରୁବ, ପରୋକ୍ଷ ଅଧ୍ରୁବ ।
ଦେଶପାଇଁ ତିଳତିଳ ପ୍ରାଣଦେଲେ ଯେହୁ,
ବର୍ଣ୍ଣିତ ସେମାନେ କ୍ରୂର ପାଷଣ୍ଡ ରାକ୍ଷସ,
ସ୍ୱଦେଶ ବିରୋଧେ ମିଶି ଶତ୍ରୁ ସହ ଧନ୍ୟ
ବିଭୀଷଣ ଇତିହାସେ, ଏହି ତ ବ୍ୟାପାର !
ଅଭ୍ରାନ୍ତ ମାପକ ନୁହେଁ ଇତିହାସ କେବେଁ,
ଜାଣିବାକୁ ନ୍ୟାୟ୍ୟ ଅବା ଅନ୍ୟାୟ୍ୟ କାର୍ଯ୍ୟର ।
ଉପସ୍ଥିତ ଯାହା ତାହା ବିଚାରର ଯୋଗ୍ୟ,
ନ ଅନାଇ ବହୁଦୂରେ ଭବିଷ୍ୟତ ଗର୍ଭେ ।
ପାଇଛ ଯେତେଥର ଶିକ୍ଷା ବିଗତ ମନକୁ

କ ଉପାୟେ ବହିଅଛି ଦେଶର କଲ୍ୟାଣ ।
ନିର୍ଜୀବ ସ୍ୱଦେଶବାସୀ ବହୁଧା ବିଭକ୍ତ,
ଅଶିକ୍ଷା କୁଶିକ୍ଷା ମଗ୍ନ ବହୁ ଯୁଗ ବ୍ୟାପୀ,
ସମ୍ଭବ କି ସ୍ୱାଧୀନତା ସହସା ଏ ଦେଶେ ?
ଅପସରିଯାଏ ଯଦି ମାୟାପୁରୀ ରାଜ,
ଆସିବ ଭୁରନ୍ତେ ମାଡ଼ି ଆଉ ଏକ ରାଜ୍ୟ,
ପର ଅଧୀନତା ଲେଖା ଭାଗ୍ୟେ ଏ ଦେଶର ।
ଅଧୀନତା ଯେବେ ଧ୍ରୁବ, ତେବେ ବାଞ୍ଛନୀୟ
ମାୟାପୁରୀ ରାଜକର ଏ ଦେଶ ଶାସନ ।
କହ ଦେଖି କେଉଁ ଦେଶ ଲୋଡ଼େ ସହଯୋଗ,
ବିଜିତ ଦେଶବାସୀଙ୍କ ଶାସନ ଚାଳନେ ?
ମିହିର—ମାନୁଛି ମୁଁ ଇତିହାସେ ନାହିଁଟି ସମାନ,
ବିଜିତ ସାହାଯ୍ୟେ କରେ ବିଜେତା ଶାସନ ।
ନିଃସନ୍ଦେହେ ଏହା ଅତି ଅଦ୍ଭୁତ ବ୍ୟାପାର,
ହୋଇଛି ସମ୍ଭବ ଏକା ସୁବର୍ଣ୍ଣ ନଗରେ ।
ଯେତେଦିନ ଚାଲିଥିବ ଏହି ସହଯୋଗ,
ବିଜିତଙ୍କ ଜେତା ସହ ଶାସନ ଚାଳନେ,
ତେତେଦିନ ଅଧୀନତା ଲିଖିତ ଲଲାଟେ
ବିଜିତ ଦେଶର, ନାହିଁ ତିଳେହେଁ ସନ୍ଦେହ ।
ବିଜେତା ସମାଜେ ଦେଶଦ୍ରୋହୀ ସହଯୋଗୀ,
ନିଃସନ୍ଦେହେ ଲଭେ ଖ୍ୟାତି ବିଭୀଷଣ ପରି ।
ସ୍ୱକୀୟ ସମାଜେ ମାତ୍ର ନିନ୍ଦିତ ଘୃଣିତ
ହୋଇଥିବ ରହିଥିବା ଯାଏଁ ସେ ସମାଜ ।
ମାନୁଛି ମୁଁ ନାହିଁ ବଳ ଶରୀରର ଦେଶେ,

ପରାକ୍ରମେ ଅସମର୍ଥ ଶତ୍ରୁର ତାଡ଼ନେ ।
ଜାଣିଶୁଣି ନିଜ ଶକ୍ତି ନ ଅଛୁ ହରାଇ,
ଏକଦା ଏ ବୀରଭୂମି ଭୁବନ ପ୍ରସିଦ୍ଧ ।
ଭାଗ୍ୟଚକ୍ର ଆବର୍ତ୍ତନେ ହୋଇ ପରାଜିତ,
ବଳାତ୍କାରେ ବହିଷ୍କୃତ ହେଲା ଶୌର୍ଯ୍ୟ ଦେଶୁଁ ।
ମନାଇଲା ବଶ ସିନା ଶରୀରକୁ ଜେତା,
ଆତ୍ମାଠାରେ ଅଧିକାର ନାହିଁ ତ ତାହାର ।
କରୁଁ ଯେବେ ଜାଣିଶୁଣି ସମର୍ପଣ ଆତ୍ମା,
ସରଗଲା ସିନା ଆମ ମନୁଷ୍ୟର ସତ୍ତ୍ୱ ।
ହୋଇଥାଉ ଦେହ ପଛେ ବିଜେତା ଅଧୀନ,
ରଖି ତ ପାରୁଁ ଆତ୍ମାକୁ ସ୍ୱାଧୀନ ନିର୍ମଳ ।
ହେଲେ ସୁଦ୍ଧା ସିଂହ ଲୁହା ପିଞ୍ଜର ଆବଦ୍ଧ,
ସିଂହତ୍ୱ କି ଭୁଲିଯାଏ କେବେ ସେ କେଶରୀ ?
ବିଜୟକୁମାର—ବୁଝିଲିଣି ପଡ଼ିଛୁ ସେ ସନ୍ନ୍ୟାସୀର ପାଲେ,
କରୁଛୁ ଯା' ଆତ୍ମା ଦେହେ ସୂକ୍ଷ୍ମ ବିବେଚନା ।
ସହଜ ତାତ୍ତ୍ୱିକ ହେବା ବଖାଣିବା ମତ,
କଠିନ ଆଣିବା କିନ୍ତୁ ବ୍ୟବହାରେ ତତ୍ତ୍ୱ ।
ପୋଥିଲେଖା ବହୁ ତତ୍ତ୍ୱ ରହୁଛୁ ସଂସାରେ,
ଅକ୍ଷୁଣ୍ଣ ସମ୍ମାନ ତାଙ୍କ ପୁସ୍ତକେ କେବଳ ।
ବ୍ୟବହାର କ୍ଷେତ୍ରେ କେବେ ନାହିଁ ସ୍ଥାନ ତାଙ୍କ,
ନ ଖୋଜଇ ତାଙ୍କୁ କେବେ କାର୍ଯ୍ୟକାରୀ ଲୋକ ।
ଅକର୍ମା ବାତୁଳ ବେଶେ ଇଚ୍ଛୁକ ଯେବେ ତୁ',
କରିବାକୁ ଯୋଗ ଜଣେ ନୁଆ ଅକର୍ମଣ୍ୟ,
ମାତ୍ର ଯା' ଟିକେ ତୁ ସେହି ସନ୍ନ୍ୟାସୀ ବଚନେ

ନାଶ କରି ଜୀବନର ମହତ ଉଦ୍ଦେଶ୍ୟ ।
ଜୀବନ ସାର୍ଥକ ଯେବେ ହୁଏ ସିଦ୍ଧିମୟ,
ଅନ୍ୟଥା ନଗଣ୍ୟ ପଶୁ ସହିତେ ସମାନ ।
ମିହିର—ଲଭିଲେ ସମ୍ମାନ ଧନ ସ୍ୱଦେଶ ବିରୋଧୀ,
ସିଦ୍ଧିମୟ ତା' ଜୀବନ ହେବ କି ଗଣିତ ?
ନୁହେଁ ସେ ସମ୍ମାନ ଯାହା ମିଳେ ଶତ୍ରୁଠାରୁ,
ଜଘନ୍ୟ ସ୍ୱଦେଶ ଦ୍ରୋହ ପୁରସ୍କାର ରୂପେ ।
ଚୌର୍ଯ୍ୟ ସେ ଅର୍ଜନ ଯାହା କରେ ଦେଶଦ୍ରୋହୀ,
ବିଜେତାର ଦାସ ହୋଇ ସ୍ୱଦେଶ ବିରୋଧ ।
ବରଂ କଣ୍ଟକମୟ ଅରଣ୍ୟ ଭ୍ରମଣ,
ଅନଶନେ ତରୁତଳେ ଜୀବନ ବ୍ୟତ୍ୟୟ,
ସ୍ୱଦେଶ ଉଦ୍ଧାର କଳ୍ପେ ବାତୁଳ ପରିଏ,
ମନେ ହୁଏ ଶତଗୁଣ ଶ୍ରେୟସ୍କର ସିଦ୍ଧି ।
ବିଜୟକୁମାର—ମସ୍ତିଷ୍କ ବିକୃତ, ଚିନ୍ତା ବିକ୍ଷିପ୍ତ ତୋହର,
ବିତଣ୍ଡା ବିତର୍କ ପାଇଁ ନାହିଁ ମୋ ସମୟ ।
ମନେ ରଖ ପାଳକ ମୁଁ, ତୁ' ମୋର ପୋଷିତ,
ପିତାର ଆଦେଶ ତୋ'ର ଶିରୋଧାର୍ଯ୍ୟ ସଦା ।
ଭକ୍ତ ମୋ ହୃଦୟ ଶୁଣି ପାଗଳ ପ୍ରଳାପ,
ମୋ ପରି ପିତାର ପୁଣି ପୁତ୍ର ଏହିପରି !
ବଦଳାଅ ମତଗତ ଅଚିରେ ବାଳକ,
ନ ହେଲେ ପ୍ରମାଦ ଅତି ଉଭୟଙ୍କ ପକ୍ଷେ ।
କାରଣ୍ଟୁ ସଂଚୟ ଯେଉଁ ବିଭବ ଗୌରବ,
ଚଳଚଳ ଦେଇ ମନ ଶରୀର ଶକତ,
ଉଜୁଡ଼ିବ ଶସ୍ୟ ଭଳି ଶଲଭ ପ୍ରକୋପେ,

ଥିଲେ ପୁତ୍ର ତୋହପର ଅଭାଗା ଅକର୍ମୀ ।
ଚାହୁଁ ଯେବେ ଭୋଗିବାକୁ ଜୀବନେ ସମ୍ମାନ,
ରହିବାକୁ ମୃତ୍ୟୁ ଶେଷ ସୁଖେ ଏ ଜଗତେ,
କର ତେବେ ସଂଶୋଧନ ନିଜ ଆଚରଣ,
ଅନ୍ୟଥା ତୁ' ପୁତ୍ର ନୁହେଁ, ମୁଁ ନୁହେଁ ଜନକ ।

---

# ସମ୍ରାଟ ଓ ସାମ୍ରାଜ୍ଞୀ

ସାମ୍ରାଜ୍ଞୀ—ବୁଝାଉଛ ଏତେ କିନ୍ତୁ ମାନୁନାହିଁ ମନ,
ନ ଲାଗୁଛି ସୁଖ ତବ ସାମ୍ରାଜ୍ୟ ଶାସନ ।
ଅତିକ୍ରମି ଦୂର ପଥ ଆସେ ଯେ ସ୍ୱଇଜୁଁ,
ଶାଣଦଅ ଶରପରି ଶୋକ ଦୀର୍ଘଶ୍ୱାସ,
କରେ ମୋ ହୃଦୟ ଭେଦ ହୁଏଁ ମୁଁ ବ୍ୟାକୁଳ
ମଳିନ ହୁଏ ମନୁଷ୍ୟତ୍ୱ ନାହିଁକି ଆମର ।
ଜାଣେ ମୁଁ କରିଛ ତୁମେ ଯେ ଦେଶେ ନିର୍ବଳ,
କାଢ଼ିନେଇ ଅସ୍ତ୍ରଶସ୍ତ୍ର କରିଛ ନିରସ୍ତ୍ର ।
ନୁହଁଇ ସମ୍ଭବ ସେଠି ସଶସ୍ତ୍ର ବିଦ୍ରୋହ,
ରହିଛ ନିଶ୍ଚିନ୍ତ ତେଣୁ ସେ ଦେଶ ଶାସନେ ।
ଜାଣ କି ଦୁର୍ବଳ ସାଥୀ ସଦା ଭଗବାନ,
ଯୋଗାଇ ଦିଅନ୍ତି ତାଙ୍କୁ ଦିବ୍ୟ ଅସ୍ତ୍ରଶସ୍ତ୍ର ?
ପୀଡ଼ିତର ଦୀର୍ଘଶ୍ୱାସ, ଆଥିର କ୍ରନ୍ଦନ,
ଅର୍ଜିତର ଅଭିଶାପ, ଦୁଃସ୍ଥର ମିନତି,
ଏହିସବୁ ଈଶ୍ୱରଙ୍କ ଅମୋଘ ଆୟୁଧ,
ଯାହା ବଳେ ବଳୀ ହୁଏ ବିନୀତ ଦୁର୍ବଳ ।
ଉପହସେ ତାଙ୍କୁ ଜନ ହୃଦୟ ବିହୀନ,
ହୃଦୟୀ ପରାସ୍ତ ହୁଏ କିନ୍ତୁ ସେହି ଅସ୍ତ୍ରେ ।
ମନୁଷ୍ୟ ହୋଇଣ ଯା'ର ନ ଅଛି ହୃଦୟ,
ପଶୁ ସିନା ସେ ଜଗତେ ଲାଙ୍ଗୁଳବିହୀନ ।

ନ ପାରିବି ସହି ଆଉ ଦିବ୍ୟପ୍ରହରଣ,
ବରଷେ ଯା' ହୃଦେ ମୋର ସୁବର୍ଣ୍ଣ ନଗରୁଁ ।
ନାହିଁ ପ୍ରୟୋଜନ ମୋର ସାମ୍ରାଜ୍ଞୀପଦରେ,
ନ ଅଛି ଲାଲସା ଆଉ ଏ ରାଜପ୍ରାସାଦେ,
ନ ଲାଗୁଛି ସୁଖ ଆଉ ଗୃହସ୍ଥଜୀବନେ,
ପ୍ରତିଷ୍ଠିତ ଯାହା ଅନ୍ୟ ଅତ୍ୟାଚାର ପରେ ।
ଜାଣେ ମୁଁ, କହିବ କେତେ ଭୁଲାଣିଆ କଥା,
ସତ ମିଛ ବପର୍ଯ୍ୟସ୍ତ କରି କେତେ ତଥ୍ୟ ।
ସିଦ୍ଧାନ୍ତ ମୋ ଶୁଣ ଏହା ନ ହେବ ଅନ୍ୟଥା,
ପ୍ରଲୋଭନେ କୂଟ ତର୍କେ ପ୍ରଣୟ ନିବନ୍ଧେ ।
ଯିବି ମୁଁ ସେବିକା ହୋଇ ସୁବର୍ଣ୍ଣ ନଗରେ,
କରିବି ମୁଁ ସେବା ସେଠି ପୀଡ଼ିତଜନଙ୍କ ।
ଦେଶ ପାଇଁ ପ୍ରାୟଶ୍ଚିତ୍ତେ ବିତାଇବି ପ୍ରାଣ
ମିଳିପାରେ ଅବା କ୍ଷମା ଦେବଦରବାରେ ।

ସମ୍ରାଟ—ବନ୍ଧ ବାଡ଼ ଭାଙ୍ଗି ବନ୍ୟା ମାଡ଼େ ଯେବେ ବେଗେ,
ନୁହେଁ ତା' ନିଷ୍ଫଳ ଖାଲି, ଅତି କ୍ଷତିକର ।
ଭାସିଯାଏ ଘରଦ୍ୱାର ଉଚ୍ଛନ୍ନ ଜନତା,
ପଳାଏ ପ୍ଳାବନୁଁ କରି ହାହା ହାହା ରବ ।
ସେ ପ୍ରବାହ ହୁଏ ଯେବେ ପ୍ରଣାଳୀ ଆବଦ୍ଧ,
ସଂଯତ ଗତିରେ କରେ କ୍ଷେତ୍ରେ ଜଳଦାନ,
ହସିଉଠେ ତେବେ ଧରା ହରିତ ସମ୍ଭାରେ,
ଜନତାକୁ ମିଳେ ତହୁଁ ଦେବ ଆଶୀର୍ବାଦ ।
ହୃଦୟ ସରିତ ତଥା ହେଲେ ଅସଂଯତ,
ହୁଏଟି କାରଣ ତାହା ଘୋର ଅନର୍ଥର ।

ସିନ୍ଧୁର ସରଣୀ ମଧ୍ୟେ ହେଲେ ସେ ସଂଯତ,
ଦେବଦୟା ପରି ତାହା କରେ ଉପକାର ।
ଉଦ୍‌ବେଳ ହୃଦୟ ତବ କଳ୍ପପ୍ରବଣର,
ନ ଜାଣୁଛ କେତେ କ୍ଷତି କରିବ ଅନ୍ୟର ।
ସାମ୍ରାଜ୍ଞୀ—କନ୍ଦରୁଁ ସାଗର ଯାଏଁ ସ୍ୱଚ୍ଛନ୍ଦ ପ୍ରବାହ,
ବିତରେ କରୁଣା ଲଭେ ଲୋକ ଆଶୀର୍ବାଦ ।
ମଝିରେ ପ୍ରବାହ ଯେବେ ହୁଏ ଅବରୁଦ୍ଧ
କତିପୟ ଗ୍ରାମ ସ୍ୱାର୍ଥେ ବନ୍ଧାହୋଇ ବନ୍ଧ,
ସଲିଳବିହୀନେ ତେବେ ତଳଦେଶ ଲୋକେ,
ଉଦ୍‌ଭ୍ରାନ୍ତ ଆକାଶ ସିନା ଦୀର୍ଘ ହାହାକାରେ ।
ପଡ଼ିଛି ବିଶାଳ ଏକ ବନ୍ଧ ତବ ହୃଦେ,
ଯୋଗାଇ ଦେବାକୁ ଜଳ ମାୟାପୁରେ ଏକା,
ଏତେଣେ ଯେ ବିନାଶ ଘଟେ ସୁବର୍ଣ୍ଣ ନଗରେ !!
ମସ୍ତିଷ୍କହିଁ ବାଧା ସିନା ସେଥି ହୃଦୟର !
ଶୁଣିଲିଣି ବହୁଯୁକ୍ତି ବ୍ୟାଖ୍ୟାନ ବହୁତ,
ନ ବୁଝେ ହୃଦୟ ମୋର ତର୍କ ଇନ୍ଦ୍ରଜାଲେ ।
ଯିବି ମୁଁ ନିଶ୍ଚିତ ସେହି ପୀଡ଼ିତ ରାଇଜେ,
ମାୟାପୁରୀ ଅତ୍ୟାଚାରର ପ୍ରାୟଶ୍ଚିତ୍ତ ପାଇଁ
ଯିବା ପରେ ମୋର ସୁଦ୍ଧା ସୁବର୍ଣ୍ଣ ନଗରେ
ନ ଛାଡ଼ ଯଦିବା ତୁମେ ସେ ରାଜ୍ୟଶାସନ
ଉଡ଼ାଇ ନ ଦିଅ ପକ୍ଷୀ ପିଞ୍ଜରା ଭିତରୁ,
ସ୍ୱଚ୍ଛନ୍ଦ ବିହାରେ ମୁକ୍ତ ବିସ୍ତୃତ ଆକାଶେ,
ରହିବି ମୁଁ ଜଣେ ହୋଇ ପିଞ୍ଜରାଆବଦ୍ଧ,
ସମଭାଗୀ ହୋଇ ଶତ ଶତ ନାରୀସହ
କରୁଥିବି ସମଚେଷ୍ଟା ବନ୍ଧନମୋଚନେ ।

ସମ୍ରାଟ—(ସ୍ୱଗତ) କ୍ଷତି ବା କଅଣ ଯଦି ଯାଆନ୍ତି ସାମ୍ରାଜ୍ଞୀ,
ସେବିକା ହିସାବେ ଏକ ଶାସିତ ସାମ୍ରାଜ୍ୟେ ?
ବିଜିତର କ୍ଷୁବ୍ଧଭାବ ବିଦେଶୀଶାସନେ,
ହୋଇବ ବହୁଳ ଶାନ୍ତ ରାଣୀ ଆଚରଣେ ।
ଭାବିବେ ସେ ଦେଶବାସୀ ଲଭି ଆଶ୍ୱାସନା,
ମାନ୍ଧାପୁରୀ ବାସୀ ସବେ ନୁହନ୍ତି ନିଷ୍ଠୁର,
ନ୍ୟାୟବନ୍ତ ଲୋକ ମଧ୍ୟ ଅଛନ୍ତି ସେଠାରେ,
ଚାହାନ୍ତି ସେମାନେ ବିଶ୍ୱ ସମୂହ ମଙ୍ଗଳ ।
ହଟାଇ ଦେବ ଏ ଚିନ୍ତା ସମୂହବିରାଗ
ମାନ୍ଧାପୁରୀ ରାଜ ପ୍ରତି ବିଜିତ ରାଜ୍ୟର ।
ପ୍ରାସାଦ ଶିଖରେ ଯଥା ବୈଦ୍ୟୁତିକ ତାର
ନିବାରେ କୁଳିଶପାତ ଆକାଶୁଁ ପତିତ,
ସେହିପରି ସାମ୍ରାଜ୍ଞୀଙ୍କ ସେବା ଆଚରଣ,
ରୋଧିବ ସମୂହ ରୋଷ ବିଦେଶୀଶାସନେ ।
(ପ୍ରକାଶ୍ୟେ) ଚମତ୍କୃତ ମୁଁ ଦେଖି ତବ ଦୃଢ଼ାଗ୍ରହ ଆଜି,
କହିବାକୁ ପ୍ରତ୍ୟୁତ୍ତର ନ ସ୍ଫୁରେ ବଚନ ।
ଶୁଣିବାକୁ ଯୁକ୍ତି ଅବା ବୁଝିବାକୁ କଥା,
ଏକାନ୍ତ ଅନିଚ୍ଛା ଯଦି ସଙ୍କୀର୍ଣ୍ଣତା ବୋଧେ,
କରୁଛି ସ୍ୱୀକାର ତବ ନୂତନ ପ୍ରସ୍ତାବେ,
ବାଧହୋଇ, ଅନ୍ତରର ଗଭୀର ବିଷାଦେ ।
ଯାଅ ଯେବେ ପ୍ରିୟତମେ ସେହି ଦୂରଦେଶେ,
ରଖିଥିବ ମନେ ତବ ପ୍ରଣୟ ପୂଜାଶା ।
କରିନାହିଁ ଅପରାଧ ତୁମଠାଁ ସେ କିଛି
ଅନୁଗ୍ରହପ୍ରାର୍ଥୀ ଚିର ତବ ସୁଖସଙ୍ଗ ।

ସହିବ ବିଚ୍ଛେଦ ପ୍ରିୟେ ହେଲେହେଁ ଅସହ୍ୟ,
ଦିଅ ଯେବେ ପ୍ରତିଶ୍ରୁତି ପ୍ରସନ୍ନ ହୃଦୟେ,
ନ ଯିବ ପାସୋରି କେବେଁ ଏହି ଅଭାଗାକୁ,
ଯହିଁ ଥାଅ ଯେ ସ୍ଥିତିରେ କରୁଥିବ ମନେ,
ରହିଲ ଅକ୍ଷୁଣ୍ଣ ଯେବେ ପ୍ରଣୟବନ୍ଧନ,
ନେବାକୁ ଓଷ୍ଠାର ଦିନେ ପରସ୍ପରେ ପୁଣି ।

ସାମ୍ରାଜ୍ଞୀ—ଯାଏ ଯହିଁ ରହୁଥିବ ତବ ଅନୁଗତା,
ପାରିବକି ଭୁଲି ତବ ଅକପଟ ସ୍ନେହ ?
ଡାକୁଥିବ ଈଶ୍ୱରଙ୍କୁ ଦେବାକୁ ସୁବୁଦ୍ଧି,
ବିଶ୍ୱ ହିତପାଇଁ ତବ ଉନ୍ନତ ମସ୍ତିଷ୍କେ ।
କାତରେ ଜଣାଇଥିବ ସେ ଶୁଭଦିବସେ
ସାମ୍ରାଜ୍ୟଲାଳସା ତବ ଲିଭିଯିବ ଯେବେ ।

# ବିଜୟ୍‌କୁମାର ଓ ତାରା

ତାରା—ଶୁଣିଛି ସରଗ ଯେବେ ଯାଉଥିଲା ପୋଡ଼ି,
ଅଟ୍ଟହାସ କରୁଥିଲେ କୌତୁକେ ରାକ୍ଷସ ।
ଦେଖୁଛି ଘଟୁଛି ତାହା ନୟନ ଅଗ୍ରତେ,
ହୁତାଶନ ଗ୍ରସ୍ତ ଦେଶେ ତୁମ ଅଟ୍ଟହାସ ।
ଦୂରେ ଯାଉ ଦେଶକଥା ଭାବୁନାହଁ ଥରେ,
ଏକମାତ୍ର ପୁତ୍ର ମତ ଗତକରେ କେତଣେ ?

ବିଜୟ୍‌କୁମାର—ଅକର୍ମା ସେ ଘୁଉଦେଲା ରାଜକାର୍ଯ୍ୟ ବଡ଼,
ଦେଉଥିଲି କଉଶଳେ ଯାହା ମୁଁ ଜୁଟାଇ ।
ଧୀରେ ଧୀରେ ଆସିଥାନ୍ତା ମୋହର ପଦକୁ,
ନେଇଥାନ୍ତି ଅବସର ଯେବେ ମୁଁ ବାର୍ଦ୍ଧକ୍ୟ ।
ଅଭାଗା ଚାଏ ନ ମିଳଇ ତାକୁ ରତ୍ନରାଶି,
ପଡ଼ଗଲେ ସୁନ୍ଧା ଆସି ଆପେ ଆଖି ଆଗେ ।
କହୁଥିଲା ଥରେ ମୋତେ ବହୁ ଲେଖା ତନ୍ତ୍ର,
ଦେଶ ସ୍ୱାଧୀନତା କଥା ପାଗଳଙ୍କ ପର ।
ବୁଝାଇ କହିଲି ପୁଣି କଲି ସାବଧାନ,
ନ ଯିବାକୁ ମାତ ଧୂର୍ତ୍ତ ସନ୍ନ୍ୟାସୀ ବଚନେ ।
ଦେଖୁଛ ଯେ ଆନ୍ଦୋଳନ ଗ୍ରହଅଡ଼େ ଦେଶେ,
ତାଳପତ୍ର ନିଆଁ ପର ଲଭିବ ତା' ଶୀଘ୍ର ।
ବିଶାଳ ଜନତା ଧୀର ଶାନ୍ତ ଉଦାସୀନ,
ଲାଗିଛନ୍ତି ନିଜ କାମେ କପାଳ ଆଦର ।

ସ୍ୱାଧୀନତା ବାନାଧର ଜକଣ କେତେ ମୂର୍ତ୍ତି,
ମାତ୍ରଛନ୍ଦ୍ର ତଡ଼ିଦେବେ ମାୟାପୁରୀ ରାଜ ।
ଦମନ-ଆଷାଢ଼ର ଅନ୍ତ ହୋଇଗଲେ ବର୍ଷା,
ବସିଯିବ କାହିଁ ଉଡ଼ୁଥିବା ଧୂଳିଦାକ ।
ତା'ପରେ ସମସ୍ତ ହେବ ନିର୍ମଳ ଶୀତଳ,
ଭୁଲିବ ଦୁନିଆ ପୁଣି ଭୁଲିଥିଲା ଯଥା ।
ତୁମେବି ବୁଝାଇଦିଅ ପୁଅକୁ ତୁମର,
ନ ଯାଉ ପାଖକୁ ହେଲେ ସନ୍ନ୍ୟାସୀଦଳର ।
ତାରା—ବୁଝାଇବା ଆଗୁଁ ତା'କୁ ବୁଝିଗଲି ନିଜେ,
ଧାଉଁଛି ସରକାରୀଂଆଡ଼େ ଯୁବକର ମନ ।
କଲ୍ୟାଣଭାଜନ ହେବା ସ୍ୱଦେଶବାସୀଙ୍କ.
କ୍ଷେମଙ୍କର ବିଦେଶୀଙ୍କ ଅନୁଗ୍ରହଠାରୁ ।
ପାଣିଠାରୁ ରକ୍ତ ନିଶ୍ଚେ ବେଶୀ ବହଳିଆ,
ସ୍ୱଦେଶକୁ ଛାଡ଼ି କିଏ ଆଦରେ ବିଦେଶ ?
ଶୁଣିଛି ମୁଁ ଯଦି ତୁମେ ବଦଳାଇ ମନ,
ନ କର ସାହାଯ୍ୟ କିଛି ବିଦେଶୀ ଶାସନ,
ଛାଡ଼ିଯିବ ଆପେ ଆପେ ପରଦେଶୀ ରାଜ,
ରହିବେ ଆନନ୍ଦେ ଆମ ଦେଶବାସୀଯାକ ।
ଦେଶ ସାରା ତପ୍ତ ଶ୍ୱାସେ କରେ ତିରସ୍କାର,
ପର ପ୍ରତିନିଧି ତୁମେ ସ୍ୱଦେଶ ବିରୋଧୀ ।
କି ହେବ ସେ ସନମାନେ ଭୂଷିବେ ଅଥବା,
ମିଳେ ଯାହା ସ୍ୱଜନଙ୍କ ପ୍ରୀତି ବିନିମୟେ,
ବିଦେଶୀଙ୍କ ଦାନରୂପେ ଦେଶଦ୍ରୋହ ପାଇଁ,
ବହିବାକୁ ହୋଇ ଚିର ଲୋକଅଭିଶପ୍ତ ।

ଗୃହେଁ ଥରେ ପୁଅ ଅଟେ ସେହି ତ ସର୍ବସ୍ୱ ।
ବଜ୍ରକୁମାର—ମାଆ ପିନା ସନ୍ତାନକୁ ବୁଝାଇ ସୁଝାଇ,
ମଙ୍ଗଳ ନିମିତ୍ତ ଆଣେ ବାଟକୁ ଅବାଟୁଁ,
ଅଦଭୂତ ଜନନୀ ତୁମେ କର ବିପରୀତ,
ଯାଉଛ ଅବାଟେ ନିଜେ ପୁତ୍ର ସ୍ନେହେ ମାତ ।
ଶାସକ ହସାବେ ପିନା ଫସାରେ ମୋ ଚିତ୍ତ,
ଅନ୍ୟଥା ଆକାଶେ ଶୂନ୍ୟ ସମ ପିନା ମୁହିଁ ।
ମନେକର ଗଲେ ମାତୃପୁରୀ ରାଜ,
ସୁବର୍ଣ୍ଣ ନଗର ହେଲ ସମ୍ପୂର୍ଣ୍ଣ ସ୍ୱାଧୀନ,
ରହିଛନ୍ତି ବହୁହୂରେ ନଗଣ୍ୟ ଯେ ଲୋକେ,
ଲୋକେ ତ କଷ୍ଟ ଥରେ ଅଧେ ଲଭନ୍ତି ସୁଯୋଗ,
ଦର୍ଶନ ଲଭନ୍ତି ଅବା ପାଶେ ବସିବାର,
ମଣନ୍ତି ନିଜକୁ ଅତ ଭାଗ୍ୟବାନ ବୋଲି,
ସେହିମାନେ ବଡ଼ ହେବେ ଇତର ଜନତା,
ଲୁଚିଯିବ କାହିଁ ମୁହିଁ ନ ରହିବ ସତ୍ତା ।
ଏହି କ ଲାଳସା ତବ ପଶ୍ଚିମ ଜୀବନେ,
ହେବାପାଇଁ ହୀନମାନ ନଗଣ୍ୟ ନିର୍ଧନ ?
ତା' ଛଡ଼ା ସହଜନୁହେଁ ସ୍ୱରାଜ୍ୟ ପ୍ରାପତ,
ମାତ୍ରାପୁରୀ ରାଜ ନୁହେଁ କାର୍ପାସ କଣିକା,
ସାମାନ୍ୟ ପବନେ ଯିବ ଉଡ଼ି ବହୁହୂରେ ।
ଭାବ ଦେଖ ପୁଣି, ଯଦି ଛାଡ଼େ ମୁଁ ମୋ ପଦ,
କ ଅଛି ନଷ୍ଟପ୍ରାୟ ଆଉ ନ ଆସିବେ କେହି !
ମାଡ଼ିବସିବାକୁ ସ୍ଥାନ ଥିଲି ଯା' ମୋହର,
ଲଭିବାକୁ ଅଧିକାର ବଳିବ ଗୌରବ ?
କହ ଏବେ ଦେଶଦ୍ରୋହୀ ମୁହିଁ ଦୁରନ୍ତ,

ଜାଣି ରଖ ତେବେ ନୁହେଁ ଏକା ମୁଁ ସେପରି ।
ବହୁଲୋକ ଛକାଛକ ଏହି କାମ ପାଇଁ,
ଗୃହିଁଛନ୍ତି ଠେଲି ଦେଇ ମାଡ଼ି ଆସିବାକୁ ।
ବୁଦ୍ଧିବଳେ କର୍ମବଳେ ରହିଛୁ ଅଟଳ,
ଅସଂଖ୍ୟଙ୍କ ଈର୍ଷା ପାତ୍ର ହୋଇ ଏ ସ୍ଥାନରେ ।
ଜାଣନ୍ତି କ ଏକା ମୁହିଁ ଦେଶର ରଇତି,
ପୋଷିଛୁ ବିଦେଶୀ ରାଜ ଦୁଧ ଭାତ ଦେଇ,
ଦିଅନ୍ତି ଫୋପାଡ଼ି ଏହି ମୂହୂର୍ତ୍ତେ ମୋ କାମ,
ଦିଅନ୍ତି ବରଜ ସବୁ ସ୍ୱଦେଶ ସକାଶେ ।
ତାରା—କରିବାକୁ ଛନ୍ତି ବୋଲି ନିନ୍ଦିତ କୁକର୍ମ,
ଅନ୍ୟ ଲୋକେ, ବରିଧିବ କ ନିନ୍ଦିତ ଆଚାର ?
ଏକ ଦିଗେ ଲୋକ ନିନ୍ଦା, ଅଶାନ୍ତି ସ୍ୱଗୃହେ,
ଅନ୍ୟ ଦିଗେ ପରିଦତ୍ତ ସମ୍ପଦ ସମ୍ମାନ,
ଦିଅ ଯେବେ ବାଛିବାକୁ ମୋତେ ଏହିଥିରୁ,
ବାଛିନେବି ଗୃହଶାନ୍ତି ସ୍ୱଜନ ପ୍ରଶଂସା ।
ବିଜୟକୁମାର—ଏ ସବୁ କଥାରେ କପାଁ କର ହସ୍ତକ୍ଷେପ,
ରାଜନୀତି ନୁହେଁ ଘରକରଣା ବ୍ୟାପାର !
ହେବି ଯଦି ଚାଳିତ ମୁଁ ତୁମର ବୁଦ୍ଧିରେ,
ପଡ଼ିବି ପାତାଳେ ଯାଇ ଅତି ଅବହେଳେ ।
ଜାଣି ନାହିଁ ବହୁ କଥା ବୁଝି ନାହିଁ କିଛି
କରିବାକୁ ବେଶୀ ଯୁକ୍ତି ନାହିଁ ମୋ ସମୟ ।
ଏତିକି କହେ ମୁଁ ଖାଲି ରହ ଧୈର୍ଯ୍ୟ ଧରି,
ନ ଶୁଣାଅ ମୋତେ ଆଉ ଅପ୍ରିୟ ବଚନ,
ନିର୍ଭୟେ ନିର୍ଭର କର ପୁରୁଷ ବଚନେ,
ଲଭିବୁ ମଙ୍ଗଳ ନାରୀ ସର୍ବଦା ସର୍ବଥା ।

# ସନ୍ନ୍ୟାସୀ ଓ ସାମ୍ରାଜ୍ଞୀ

ସାମ୍ରାଜ୍ଞୀ—କରନ୍ତୁ ବର୍ଜନ ବ୍ରତ କରେଁ ଅନୁରୋଧ,
ନ କରନ୍ତୁ ମାୟାପୁରେ ଶର ଅଭିଶପ୍ତ ।
ଗୃହୁଁ ଗୃହୁଁ ବିନ୍ଦୁ ବିନ୍ଦୁ ଦିଅନ୍ତୁ ଯେ ପ୍ରାଣ,
ପ୍ରାୟୋପବେଶନେ ଦେଶ ମୋଚନ ସକାଶେ,
ମୃକ୍ତ ହୋଇ ସେହୁ ଏହି ନଶ୍ୱର ଶରୀରୁ,
ମିଶିଣ ଅନନ୍ତେ ଯାଇ ବରଷିବ ଶର,
ଶକ୍ତ ଅଭିଶାପ ଖାଲି ମାୟାପୁରୀ ଶିରେ ।
ନ ଜାଣେଁ କି ଭୟାବହ ହେବ ପରିଣାମ,
ବିଶୁଦ୍ଧ ଆତ୍ମାର ଅଭିଶାପ ମାୟାପୁରେ ।
ଦିଅନ୍ତୁ ସମୟ ମାଇଁ ନିବର୍ତ୍ତିଏଁ ଦେଶେ,
ସ୍ୱଦେଶ ବାସୀଙ୍କୁ ତଥା ସମ୍ରାଟେ ଅମାତ୍ୟେ,
ରାଜ୍ୟାପହରଣ ରୂପ ମହତ ପାତକୁଁ,
ଉଦ୍‌ବୋଧିତ କରେଁ ତାଙ୍କ ମାନବୀୟ ଭାବ ।

ସନ୍ନ୍ୟାସୀ—ସାମ୍ରାଜ୍ଞୀ, କରନ୍ତୁ କ୍ଷମା ବ୍ରତ ମୋ ଅଟଳ,
ଆରମ୍ଭର ହେବ ନିଶ୍ଚେଁ ସ୍ୱାଭାବିକ ଶେଷ ।
ପରଖୁଛି ଯେତେ ମୁହିଁ ନିଜର ବିବେକ,
ଜାଣୁଛି ନାହିଁ ତ ତଳେ ଦ୍ୱେଷଭାବ ହୃଦେ ।
ଏକମାତ୍ର ଶକ୍ତି ମୋର ଜଗତର ହିତ,
ଉତ୍ଥାପନ ମନୁଷ୍ୟଙ୍କୁ ଚତୁଷ୍ପଦ ସ୍ତରୁଁ ।
ଦେଇ ମୋ ଜୀବନ ତାଙ୍କୁ କରିବି ମୁଁ ଧନ୍ୟ,
ମାନବେ ମାନବେ ଭ୍ରାତୃଭାବ ସଂସ୍ଥାପନେ ।

ଦିଅନ୍ତୁ ଶୁଣେଇଛି ହେଉ ସଙ୍କଳ୍ପ ମୋ ପୂର୍ଣ୍ଣ,
ହସି ହସି ଯାଉ ଚାଲି ଜୀବନ ଶରୀରୁଁ ।

ସାମ୍ରାଜ୍ଞୀ—ପ୍ରତାରକ ବଡ଼ କଲ୍ପ ମନୁଷ୍ୟ ମସ୍ତିଷ୍କ,
ଭୂଲାଏ ସେ କେବେ କେବେ ଅତି ଅଲକ୍ଷିତେ ।
ସ୍ୱଚ୍ଛ ଜଳ ତଳେ ଯଥା ବସିଥାଏ ମଳ
ରହିଥାଏ ତଥା କେତେ ଉଚ୍ଚ ଚିନ୍ତା ତଳେ,
ଅଦୃଶ୍ୟ ଭାବନା ଯେତେ ମନୁଷ୍ୟ ମସ୍ତିଷ୍କେ,
କରୁଥାଏ ନିଜ କାମ ସଂପୂର୍ଣ୍ଣ ଅଜ୍ଞାତେ ।
ବିଶ୍ୱ ହିତ ଚିନ୍ତା ତଳେ ନାହିଁ ତ ଏ ଭାବ,
ରକ୍ଷା ହେଉ ଜନମତ ଅପରାଧୀ ପ୍ରତି,
ପାଉ ସେ ଭୀଷଣ ଦଣ୍ଡ ଉତ୍‌ପୀଡ଼କ ହସ୍ତେ,
ନିଶ୍ଚିତ କି ନାହିଁ ଚିନ୍ତା ଏପରି ଅଜ୍ଞାତେ ?
ଅନିଷ୍ଟକାରୀଙ୍କୁ ଦଣ୍ଡ ଦେବା ଅଭିପ୍ରାୟ,
ମାନୁଛି ଅବଶ୍ୟ ନୁହେଁ ନିନ୍ଦନୀୟ ତାହା ।
ଦିଅନ୍ତୁ ତ୍ୟାଗି ଏବେ ସୁବୁଦ୍ଧି ସନ୍ନ୍ୟାସୀ,
ବୁଝାଇ ଫେରାଇବାକୁ ସ୍ୱଦେଶବାସୀଙ୍କୁ,
ସ୍ୱାର୍ଥ ପଥୁଁ ନିଜ ତଥା ଜଗତ କଲ୍ୟାଣେ ।
ଅନଶନ ପରିହାର କରନ୍ତୁ ଅଧୁନା,
ଯାଏ ମୁଁ ସ୍ୱଦେଶେ କରେଁ ଉଦ୍ୟମ ସେପାଇଁ ।

ସନ୍ନ୍ୟାସୀ—ମନା ନାହିଁ କରିବାକୁ ଉଦ୍ୟମ କାହାକୁ,
ବତାଇ ଦେବାକୁ ବାଟ ପଥହରା ଲୋକେ ।
ସେ ଉଦ୍ୟମ ସଙ୍ଗେ ନାହିଁ କିଛି ତ ସମ୍ପର୍କ,
ପ୍ରାୟୋପବେଶନେ, ଯାହା କରିଛି ଗ୍ରହଣ ।
ଯାଇପାଉ ନିଜ ଦେଶ କରିପାରି ଚେଷ୍ଟା,
ହୁଏ ଯେବେ ଫଳବତୀ ଯଥାକାଳେ ତାହା,

ଜଗତ କଲ୍ୟାଣ ସଙ୍ଗେ ବଞ୍ଚିବ ମୋ ପ୍ରାଣ,
ନ ହେଲେ ମରିବ ମାତ୍ର ଜଗତ ମଙ୍ଗଳ—
ସାଧନ ଉଦ୍ୟମେ ଥିଲେ ନ ଲାଗିବ ବାଧା ।
ହିଂସାର ଅରଣ୍ୟ ମଧ୍ୟେ ହୋଇ ବାଟ ବଣା,
ଧନ୍ଦ ହୁଏ ମୂଢ଼ ବୁଦ୍ଧି ମାନବ ଜଗତେ,
ପ୍ରାଣ ଦେଇ ଯଦି କରେଁ ପ୍ରତୋଳ ପ୍ରସ୍ତୁତ,
ତେବେ ତ ହୋଇବ ଧନ୍ୟ ଏ ଦୀନ ଜୀବନ ।
ସାମ୍ରାଜ୍ଞୀ—ଅଟଳ ପ୍ରତିଜ୍ଞା ତବ ନ ଖଟେ ସାହସ,
କହିବାକୁ ବେଶୀ କଥା ଏହୁ ସ୍ଥଳେ ମୁହିଁ ।
କରନ୍ତୁ ସାଧନ ଯାହା ଭାବନ୍ତି ମଙ୍ଗଳ,
ମାନବ ଜାତିର ମନ ସଂଶୋଧନ ପାଇଁ ।
କହନ୍ତୁ କର୍ତ୍ତବ୍ୟ ମୋର ଦିଅନ୍ତୁ ଆଦେଶ;
କରିବ ପାଳନ କାୟମନୋବାକ୍ୟେ ତାହା ।
ସନ୍ୟାସୀ—ବୁଦ୍ଧିମତି, ବୁଝନ୍ତି ତ ସମସ୍ତ ବିଷୟ,
ନ ଜାଣେ ଯୋଗ୍ୟତା ମୋର ଉପଦେଶ ଦାନେ ।
ଭାବୁଛି, ନୁହେଁ ଏ ଦେଶ କର୍ମ୍ମକ୍ଷେତ୍ର ତବ,
ଯହିଁ ତବ ଦେଶବାସୀ କରନ୍ତି ଅନ୍ୟାୟ,
ସୁପ୍ରଶସ୍ତ କର୍ମ୍ମକ୍ଷେତ୍ର ତବ ମାୟାପୁରୀ,
ନ ବୁଝନ୍ତି ଯହିଁ ଲୋକେ ପର ପୀଡ଼ା ତାପ ।
ଜଗାଇବା ଆବଶ୍ୟକ ସେ ଦେଶେ ଚେତନା,
ଜାଣିବାକୁ ତାପ ବୋଲି ସାମ୍ରାଜ୍ୟ ଶୋଷଣ ।
ଉଠାଇବା ପତିତଙ୍କୁ ଯେପରି ମୋ କାମ,
ନୁଆଁଇବା ଉଦ୍ଧତଙ୍କୁ ତଥା ତବ କାର୍ଯ୍ୟ ।
ତେବେ ଯାଇ ପ୍ରତିଷ୍ଠିତ ହେବ ସମ ଭାବ,
ନ ରହିବ ବୈରିଭାବ ମାନବେ ମାନବେ ।

# ସମ୍ରାଟ ଓ ବିଜୟକୁମାର

ସମ୍ରାଟ—ସାମାନ୍ୟ ସନ୍ନ୍ୟାସୀ ଜଣେ ମତାଇ ସେ ଦେଶ
ଅକାରେ ଶାସନ ମମ ନ୍ୟସ୍ତ ତବ ହସ୍ତେ ।
ନ ପାର ତଥାପି କର କିଛୁ ପ୍ରତିକାର,
ସନ୍ଦେହ ଜନ୍ମାଏ ମନେ ତୁମ୍ଭ ଅସାମର୍ଥ୍ୟ ।
ଭାବୁଛ କି ସ୍ୱାର୍ଥ ଆଣେ କରିଛ ବନ୍ଧନ,
ସାମ୍ରାଜ୍ୟ ଶାସନ ଭାର ବିଶାଳ ଦୁର୍ବଳ ?
ଉତୁରି ଗଲେ ଏ ବୋଝ ମାରିବ ନିଶ୍ୱାସ,
ଛୁଡ଼ ପାଇ ପରିଶ୍ରାନ୍ତ ବୈଷ୍ଟିକ ଯେସନ ।
ନିଜ ରାଜ୍ୟ ବୁଝାସୁଝା ପୁଣି ନିଜ ସ୍ୱାସ୍ଥ୍ୟ,
ସର୍ବୋପରି ଚିରଶାନ୍ତି, ଏ ସବୁ ବିନଷ୍ଟ,
ପରରାଜ୍ୟଭାର ବହି, ଗର୍ଦ୍ଦଭ ସଦୃଶ
କେବଳ ବୋଝହିଁ ସାର, ନାହିଁ ଅନ୍ୟ ଲାଭ ।
ବିଧିର ବିଧାନ ବୋଲି ସହେଁ ଏ କଷଣ,
ପାଶୋରି ନିଜର ଶ୍ରମ, କ୍ଷତି ଯାହା ଘଟେ ।
ନାହିଁ ମୋ ଆପତ୍ତି ତଳେ ଫୋପାଡ଼ ଦେବାକୁ,
ଅତୃପ୍ତ ସାଧୀଙ୍କୁ ବ୍ୟସ୍ତ ଓହ୍ଲାଇବା ପାଇଁ ।
ଭାବ ଦେଖି ଭଲ କରି କି ହେବ ଅବସ୍ଥା,
ଜାତି ଜାତି ଧର୍ମ ଧର୍ମ ହେବେ ଲଢ଼ାଲଢ଼ି,
ନ ରହିବ ଶାନ୍ତି ଅବା ଶୃଙ୍ଖଳିତ ସ୍ଥିତି,
କରିଦେବ ଭସ୍ମ ଦେଶ ବିବାଦ ଦାବାଗ୍ନି ।

ଭାବ ଦେଖ ତବ ସ୍ଥିତି କ ହେବ କେଉଁଠି,
ରହିବ ତ ମୁଣ୍ଡ ଟେକ ବର୍ତ୍ତମାନ ପରି ?
ହଜାର ହଜାର ମଧ୍ୟେ ଜଣେ ସାଧାରଣ,
ହୋଇଯିବ ତୁମେ ଜଣେ ଅଜଣା ଅଶୁଣା ।
ଏ ସବୁ ବଚନ ନୁହେଁ ମୋର କହିବାର,
ଗଲେ ବୋଝ ମୋ ମସ୍ତକୁ ହେବ ମୁଁ ଆଶ୍ୱସ୍ତ ।
ପାଗଳମୀ ରାଣୀ ମୋର ଅନୁକମ୍ପା ବଶେ,
ଧାଇଁଗଲ ପରଦେଶେ ଅତିସେବା ପାଇଁ ।
ଭାବଲ ନାହିଁ ସେ ଥରେ ସେ ନୁହେ ପରଦେଶ
ନ ଭାବଲ ମୁହିଁ ମଧ୍ୟ ସେ ଦେଶକୁ ପର ।
ନିଜର ବୋଲିଣ ଯାଙ୍କୁ କରେଁ ଏତେ ସ୍ନେହ,
ପର ବୋଲି ସେହି କରେ ଗୋଇଠା ପ୍ରହାର ।
ବାଢ଼ିବାକୁ ବେଶୀ ଯୁକ୍ତି ନାହିଁ ପ୍ରୟୋଜନ,
କହ ତବ ମନୋଭାବ ଶେଷ ଥର ପାଇଁ ।
ବିଜୟକୁମାର—ହୋଇଯାଏ ରୁଦ୍ଧ ଶ୍ୱାସ ଶୁଣି ତବ ବାଣୀ,
ନିଷ୍ଠୁରେ ଉତ୍ତର କିଛୁ ଦେବାକୁ ସାହସ ।
ଅତଳ ସାଗର ପରି ଗଭୀର ହୃଦୟ,
ହୁଏ କଣ ବିଚଳିତ ସାମାନ୍ୟ ପବନେ ?
ଜଣେ କେତେ ଦୁଷ୍ଟ ମିଶି କରୁଛନ୍ତି ହୁରି,
ଅପସର ବେଗେ ବୋଲି ମାୟାପୁରୀ ରାଜ,
ଶୁଭିଲା ସେ ହୁଳି ରବ ଏତେ ଜୋରେ କାନେ,
ନ ଶୁଭିଲା ତାର ସ୍ୱରେ ଉଠେ ଯେ ଚିତ୍କାର,
ଗୃହୁଁ ଆମେ ମାୟାପୁରୀ ସୁଶାସନ ବୋଲି ।
ସ୍ୱାଧୀନତା ବୋଲି ଯାହା କରନ୍ତି ଚିତ୍କାର,

କଲ୍ପନା ଖାଲି ସେ ପିନା ଭବପ୍ରବଣର ।
ତବ ଛନ୍ଦ ଛାୟା ତଳେ ରହ ନିରାପଦେ,
କରୁଁ ଉପଭୋଗ ଯେଉଁ ଶାନ୍ତି ସ୍ୱାଧୀନତା,
ଶତଗୁଣେ ଶ୍ରେୟସ୍କର ଆନନ୍ଦ ଦାୟକ,
ତାହାଠାରୁ, ଯାହା ଗୃହେଁ ତବ ବହିଷ୍କାର ।
ସ୍ୱାଧୀନ ହେବାଠୁଁ ବଡ଼ ସ୍ୱାଧୀନତା ଭୋଗ
ଶନ ହେବାଠାରୁ ଯଥା ଶନ ଆସ୍ୱାଦନ ।
ପକ୍ଷ ତଳେ ଶାବକର ନିଶ୍ଚିନ୍ତ ଜୀବନ,
ବହୁଗୁଣେ ଭଲ ମୁକ୍ତ ପକ୍ଷୀ ଜୀବନରୁ ।
ସୁବର୍ଣ୍ଣନଗରବାସୀ ବୁଝନ୍ତି ଏ ତତ୍ତ୍ୱ,
ତେଣୁ ସେ ବୃହାନ୍ତି ତବ ସାମ୍ରାଜ୍ୟ ଅକ୍ଷୁଣ୍ଣ ।
ସମ୍ରାଟ—ଲୋଡ଼ା ନାହିଁ ଜାଣିବାକୁ ଗୃହେଁ କ ଜନତା,
ନୁହେଁ ସ୍ଥିର ମତଗତ କେବେ ଜନତାର ।
ଅଦରଇ ନାସ୍ୱ ଯଥା ବଳବାନ ନର,
ଆଦରେ ଜନତା ତଥା ସୁଦୃଢ଼ ଶାସନ ।
ଜାଣିବାକୁ ଗୃହେଁ ତବ ନିଜ ଅଭିମତ,
ରଖିବ କ ନାହିଁ ମମ ଶାସନ ସୁଦୃଢ଼ ?
ବିଜୟକୁମାର—ନ ଅଛି ପୃଥକ ସ୍ଥିତି ଜ୍ୟୋତ୍ସ୍ନାର ଯେସନ
ଚନ୍ଦ୍ରମା ବହିନେ ଏହି ବିଶାଳ ଜଗତେ,
ସେହିପରି ନାହିଁ ତଳେ ସ୍ଥିତି କେଉଁଠାରେ,
ଏ ଦାସର ଏ ଜଗତେ ତବ ବିନା ପ୍ରଭୁ !
ନିଷ୍ଠାସହ ରାଜକାର୍ଯ୍ୟ କରିବାକୁ ଯାଇ,
ଛାଡ଼ିଛି ସ୍ୱଦେଶ ପୁଣି ନିଜ ପରିବାର ।
ମିହିରକୁମାର ମୋର ହୋଇ ଅମାନିଆ,

ସ୍ୱାଧୀନତା ଆନ୍ଦୋଳନେ ଯୋଗଦେଲେ ଯେବେ,
କଲ୍ଲି ମୁଁ ଶାସନ ତାଙ୍କୁ ଧାଣକର ମନ,
ରଖିବାକୁ ନିଜ ସ୍ଥିତି ବଜାୟ ଜଗତେ,
ତବ ପ୍ରତିନିଧି ରୂପେ ସ୍ୱଦେଶ ଶାସନେ,
ଅନ୍ୟଥା ବସ୍ତୁ ନବେ ମନ୍ତ୍ରୀଶୂନ୍ୟ ମୁହିଁ ।
ଯେତେଦିନ ଥିବ ପିଣ୍ଡେ ପ୍ରାଣ, ଏ କଙ୍କର
କରୁଥିବ ସ୍ୱଦେଶର ସେବା ନିରନ୍ତର,
ଦବାଇ ସୁଦୃଢ଼େ ଯେତେ ଉଚ୍ଛୃଙ୍ଖଳ କାର୍ଯ୍ୟ,
ଗୁଲିଛି ଉଚ୍ଛେଦେ ତବ ନ୍ୟାୟ ଶାସନର ।
ସମ୍ରାଟ—ସାଧୁ ତବ ଦେଶସେବା ସ୍ୱଦେଶ ପୀରତି,
କରୁଥିବେ ଗାନ ତବ ସୁବଶାଳ କୀର୍ତ୍ତି,
ମାତୃପୁରବାସୀ ବଂଶ ପରମ୍ପରା କମେ,
ହେବ ଜପକୃତ ମଧ୍ୟ ସୁବର୍ଣ୍ଣ ନଗର ।
ବୁଝୁଛି ସଲଖ ନୁହେଁ କର୍ତ୍ତବ୍ୟର ପଥ,
ଅତବକ, କଣ୍ଟକତ ଦୁଂସ୍ରଜନ୍ତୁ ପୂର୍ଣ୍ଣ ।
ଆଗେଇ ଯିବାକୁ ହେବ ତଥାପି ସେଥିରେ,
ନ ହେଲେ ଜୀବନ ବ୍ୟର୍ଥ ନଷ୍ଟ ମନୁଷ୍ୟତା ।
କର୍ତ୍ତବ୍ୟ ଜ୍ଞାନହିଁ ଏକା କରାଉଛି ବାଧ୍ୟ,
ବହିବାକୁ ମୋତେ ଏହି ସାମ୍ରାଜ୍ୟର ଭାର ।
ସେପର କର୍ତ୍ତବ୍ୟ ବୋଧେ କର ତୁମେ ଗତ,
ସ୍ୱଦେଶ ମଙ୍ଗଳ ପାଇଁ ଆତ୍ମହତେ ମଧ୍ୟ,
ଶୁଣୁଛି ସନ୍ନ୍ୟାସୀ ସେହି ଦଏ ପରାମର୍ଶ,
କରିବାକୁ ଆତ୍ମଦାନ ସ୍ୱଦେଶବାସୀଙ୍କୁ
ହେବ କି ସେ ପରାମର୍ଶ କାର୍ଯ୍ୟେ ପରଣତ ?

ହେଲେ ବା କ ହେବ ତା'ର ଶେଷ ଫଳାଫଳ ?
ବିଜୟକୁମାର—ଜାଣେ ମୁଁ ଅଧୁନା ସେହି ତାଙ୍କ କାର୍ଯ୍ୟକ୍ରମ,
ପ୍ରାଣଦେଇ ଖେଳିବାକୁ ଶାସନ ସହିତ ।
ଅଭିଳାଷ କହେ ମୋର ବ୍ୟର୍ଥ ହେବ ତାହା,
ଜନତାକୁ ବଡ଼ ପ୍ରାଣ ସ୍ୱାଧୀନତା ଠାରୁ ।
ହେଲେ ବା ନ ଅଛୁ ସେଥି ଆଶଙ୍କା କାରଣ,
ଶାସନ ନିର୍ଜୀବ ଯେଣୁ ନାହିଁ ତା' ହୃଦୟ ।
ସମ୍ରାଟ—ଶାସକର ଯଦି ହୁଏ ହୃଦୟ ଦୁର୍ବଳ,
ଛାଡ଼ିଦଏ କ୍ଳୀବହୋଇ ଶାସନର ଭାର,
ତେବେ ତ ଅଚଳ ହେବ ଶାସନର କଳ,
ହେବ ତ ସଫଳକାମ ଚତୁର ସନ୍ନ୍ୟାସୀ ।
ଶୁଣିଲେ ଶ୍ରବଣେ ଅବା ଦେଖିଲେ ନୟନେ,
ମୁକ୍ତିପାଇଁ ଆତ୍ମଦାନ ସ୍ୱଦେଶବାସୀଙ୍କ,
ଟଳିବ କି ହୃଦ ତବ କହ ସ୍ପଷ୍ଟକରି,
ଦୁର୍ବଳ ମୁହୂର୍ତ୍ତେ ମୋତେ ଦେବ କି ପାଶୋରି ?
ଜାଣ ତ ତୁମେହିଁ ଅଛ ମୋର ହସ୍ତ ପଦ,
ତୁମ ଯୋଗେ ଚଳାଉଛୁ ସାମ୍ରାଜ୍ୟ ଶାସନ ।
ଟଳମଳ ହେଲେ ତୁମେ ହୋଇଯିବ ପଙ୍ଗୁ,
ଅଗତ୍ୟା ପଡ଼ିବ ଖସି ସାମ୍ରାଜ୍ୟ ଶାସନ,
ଦୁର୍ବହ ସେ ଭାର, ତେଣୁ ହେବ ମୁଁ ନିଶ୍ଚିନ୍ତ ।
ବିଜୟକୁମାର—ଯେ ଶାଳେ ହୋଇଛୁ ଦଆ ଶାଣ ଏ ହୃଦୟ,
ଭାଙ୍ଗିଯିବ ବରଂ ତାହା ନ ନଇଁବ କେବେଁ ।
ଅକାରଣ ଚିନ୍ତା ତବ ଏ ଦାସ କାରଣେ,
ନୁହେଁ କି ମୋହର କାମ ସ୍ୱଦେଶ ରକ୍ଷଣ ?

ସମ୍ରାଟ—କର ଯାହା ବଗୃରୁଛ ଭଲ ଦେଶପାଇଁ,
ରହୁନ୍ତୁ ସିନା ମୁଁ ତୁମ ଭଲମନ୍ଦ ପାଇଁ ।
ସ୍ୱଚ୍ଛନ୍ଦ ଜୀବନଯାତ୍ରା ନିର୍ବାହ ସକାଶ,
ଯେତେବେଳେ ଯାହା ଲୋଡ଼ା କହ ଖୋଲି ମୋତେ,
କରିବି ପୂରଣ ସବୁ ଅକୁଣ୍ଠିତ ଚିତ୍ତେ,
ନ ରହୁ ସନ୍ଦେହ ଏଥି ତିଳେମାତ୍ର ତବ ।
ମନେରଖ କିନ୍ତୁ ତୁମେ ଛାଡ଼ିଗଲେ ମୋତେ,
ଅଗତ୍ୟା ଛାଡ଼ିବି ରାଜ୍ୟ ହେବି ମୁଁ ନିଶ୍ଚିନ୍ତ ।

---

# ମିହିର ଓ ମଞ୍ଜରୀ

ମଞ୍ଜରୀ—ପରାଧୀନ ଦେଶେ ମୁକ୍ତି-କାମୀ ବିପ୍ଳବୀର,-
ଭାଗ୍ୟେ ନାହିଁ ଉପଭୋଗ ସୁଖ ସ୍ୱପନର ।
ଧୂଳିଘର ପରି କେତେ ଆଶା ଅଟ୍ଟାଳିକା,
ହୁଅଇ ନିର୍ମିତ ପୁଣି ହୋଇଯାଏ ଚୂର୍ଣ୍ଣ ।
ଧନେ ହେଲେ ଜଳାଇ ଏ ଜୀବନ ପ୍ରଦୀପ,
ପ୍ରେମର ଆରତି ପାଇଁ ତବ ସ୍ନେହ ଯୋଗେ,
ନିଜକୁ ଜଳାଇ ଦେଇ ତୋଷିଥାନ୍ତି ଦୁହେଁ,
ତରୁଣ ତରୁଣୀ ପୂଜ୍ୟ ମଦନେ ମୁକର,
ଆଶା ଏହି ରହିଗଲା ଆଶାରେହିଁ ଖାଲି,
ଉଠାଇ, ମରଣ ଯାଏଁ ଉତ୍ତପ୍ତ ଉଚ୍ଛ୍ୱାସ ।
ମନୁଷ୍ୟ ଜୀବନ, ହାୟ, ଏହିପରି ଗତା,
ଅସଂଖ୍ୟ ଛନ୍ଦିରେ ଦ୍ୱନ୍ଦ ସଦା ଟଣାଟଣି ।
ସ୍ରୋତ ପ୍ରତି-ସ୍ରୋତ ମଧ୍ୟେ ହୃଦୟ ଖଣ୍ଡିକ,
ଭଙ୍ଗା ଡଙ୍ଗା ଭଳି ସିନା ହୁଏ ଟଳମଳ ।
ଚାହିଁଛି ଅଗ୍ରତେ ଯେବେ ଉଜ୍ଜ୍ୱଳ ମରଣେ,
ଦେଶ ପାଇଁ ପ୍ରତିଶ୍ରୁତି କରି ଆତ୍ମଦାନେ,
ଶୁଣୁଛି ପଛରୁ ଏକ ସକରୁଣ ସ୍ୱର,
ତବ ସ୍ୱର ପରି ଠିକ୍ କୋମଳ ମଧୁର,
ବସନ୍ତ ମଳୟେ ଯଥା ନବ କିଶଳୟ
ମର୍ମରିତ ସ୍ୱନେ ଦିଏ ଗୋପନ ସନ୍ଦେଶ,

ସେହିପରି ଟୁପୁଟୁପୁ କଏ ତୁମ ସ୍ୱରେ
କହିଦଏ କାନେ ବାଣୀ ବାଜେ ତା ମରମେ—
"'ରହିଯା' ମଞ୍ଜରୀ ଦଣ୍ଡେ ସର ନାହିଁ ସବୁ,
"ବାକି ଅଛି ପରୀ ପରସ୍ପର ଆଲିଙ୍ଗନ"।
ଭାଙ୍ଗିପଡ଼େ ହୃଦୟ ମୋ ଶୁଣି ଏ ବଚନ,
ମନେହୁଏ, ଫେରିପଡ଼ି ଗୃହେ କଟୁଷଣ,
ସାରିଦଏଁ ସବୁ କାମ ପୂରୁଣା ବାସନା,
ନ ନଏଁ ତାହାକୁ ପୁଣି ଜୀବନ ସେପାରେ ।
ପୁଣି ଯେବେ ଶୁଣେ ଡାକ ସମ୍ମୁଖେ ଦେଶର,
ଆତ୍ମଦାନ ପାଇଁ ବୀର ଯୁବାଯୁବତୀଙ୍କ
ଆହା ବୋଲି ଶ୍ୱାସଟିଏ ପକାଇ ଆଗାଏଁ
ମନ୍ଦ ମନ୍ଦ ଗତି ଯେନ ସ୍ୱଦେଶ ଅଙ୍ଗନେ ।
ନ ପାରୁଛି ବର୍ଣ୍ଣି ମୋର ହୃଦୟ ବେଦନା,
ଦୁଇଟି ପ୍ରବଳ ଭାବ ଟଣାଟଣି ମଧ୍ୟେ,
ପ୍ରତିକାର ଏଥି ଅଛି ଏକା ତୁମ ହାତେ,
ଲୋଡ଼ୁଛି ମୁଁ ତାହା ଆଜ ହୁଅ ଗୋ ସଦୟ ।
ମିହିର—ଜୀବନ ଯାହାର ଦେଶ ମୁକ୍ତି ପାଇଁ ନ୍ୟସ୍ତ ।
ଶିରୋଧାର୍ଯ୍ୟ ତା' ଆଦେଶ ଅକାଜନ ପକ୍ଷେ ।
ମଞ୍ଜରୀ—ପ୍ରସନ୍ନ ହୃଦୟେ ହସି ଅଳପ ଆନନ୍ଦେ,
କହିଦଅ, 'ମଞ୍ଜରୀ ଲୋ ଯାଅ ନିଜ କାମେ,
ଦେଉଛି ବିଦାୟ, ନାହିଁ ତିଳେ ହେଲେ ଦୁଃଖ
ତୋ ବିଚ୍ଛେଦେ ମୋ ହୃଦୟେ, ଯାଅ ତୁ ନିଶ୍ଚିନ୍ତ' ।
ଶୁଣିଲେ ଏତିକ ପ୍ରାଣ ହେବ ସୁଶୀତଳ,
ଘୁଞ୍ଚିଯିବ ଅବସାଦ ଆସିବ ଉତ୍ସାହ ।

ମିହୁର—ନ ପାରୁଛୁ ବୁଝି କହୁ ଏଥି ଅଭିପ୍ରାୟ,
ସହସା ଏପରି କର୍ମା କହ ଅବାନ୍ତର ?

ମଞ୍ଜୁଷ—ବଢ଼ୁଛୁ ଦିନକୁ ଦିନ ଗଣ-ଆନ୍ଦୋଳନ,
ବଢଇ ତା' ସଙ୍ଗେ ସ୍ୱତଃ ଶାସନ ଦମନ ।
ଜାଗ୍ରତ ଦେଶକୁ କରିଦେବାକୁ ସନ୍ତ୍ରସ୍ତ
ପ୍ରଦର୍ଶିତ ହୁଏ ଆଜି ମୃତ୍ୟୁ ବିଭୀଷିକା ।
ଅପ୍ରସ୍ତୁତ ପ୍ରତି ମୃତ୍ୟୁ ଅତି ଭୟାବହ,
ବରିନେଲେ ତାକୁ ମାନ୍ୟ ହୁଏ ସେ ନଶ୍ୱର ।
ନଶ୍ୱର ଗ୍ରାମବାସୀଙ୍କୁ ତ୍ରାସ ଦେବାପାଇଁ,
ଯାଉଛନ୍ତି ସୈନ୍ୟ ସହ ସ୍ୱୟଂ ଶାସକ,
ସଙ୍ଗେ ନେଇ ମାରଣର ଯେତେକ ଉପାୟ ।
ଲଢାଲଢି ହେବ ସେଠି ସାହସ ଭୟର ।
ଗୃହେଁ ମୁଁ ଯିବାକୁ ସେଠି ଦେବାକୁ ସୁବିଧା,
ପ୍ରାଣ ଦେଇ ଭାଙ୍ଗିବାକୁ ମରଣର ଆଣ୍ଠ ।

ମିହୁର—ଯେତେକ ମାରଣ ଯନ୍ତ୍ର ଦେଖିଛୁ ଜଗତ,
କରିଅଛୁ ଆବିଷ୍କାର ମନୁଷ୍ୟ ମସ୍ତିଷ୍କ,
ହେବେ କି ସମର୍ଥ ମାରି ଦେବାକୁ ସମୂଳେ,
ମୁକ୍ତି ଇଚ୍ଛା ହୃଦୟର ସମସ୍ତ ଜୀବଙ୍କ ?
ପିଞ୍ଜିରିକା ସୁଦ୍ଧା ଗୃହେଁ ସ୍ୱଚ୍ଛନ୍ଦ ଜୀବନ—
ଯାପନ ଅବାଧେ, ଶତଦଳନ ନ ମାନି ।
କେବେହେଲେ ମନୁଷ୍ୟ କି ରହିବ ଆଦରି—
ଆବଦ୍ଧ ଜୀବନ ଶତ ଦମନ ପ୍ରୟୋଗେ ?
ବୃଥା ସେ ଉଦ୍ୟମ କରେ ଯେ ଅନ୍ଧ ବିଶ୍ୱାସେ,
ବାନ୍ଧିବାକୁ ମନ ଦୃଢ଼ ଦମନ ନିଗଡ଼େ ।

ମଞ୍ଜରୀ—କରିବାକୁ ହେବ ଆଜ ସେହୁ ତର ସତ୍ୟ
ପ୍ରମାଣିତ ପୂର୍ଣ୍ଣଭାବେ ସୁବର୍ଣ୍ଣ ନଗରେ ।
ଆସିବେ ଯେ ନେବାପାଇଁ ଜନତା ଜୀବନ,
ଉପହାରେ ଦେବ ତାଙ୍କୁ ନିଜର ରୁଧିର ।
ଅସ୍ତ୍ରାଘାତେ ଜସ୍ତ ରକ୍ତ ଧମନୀ ନିସୃତ,
ପଡ଼ିବ ଛୁଟିକ ଯାଇ ଘାତକ ଶରୀରେ,
ଜଣାଇ ଦେବାକୁ ତାଙ୍କୁ ସେ ଶୁଭ ସମ୍ବାଦ,
ଧମନୀରେ ଏକା ରକ୍ତ ବହେ ଦୁହିଁଙ୍କର ।
ଦିଅ ଗୋ ବିଦାୟ ଯାଏଁ ତ୍ୱରିତ ସେ ଗ୍ରାମେ,
ଏ ଜୀବନେ ଏହି ଶେଷ ମିଳନ ଆମର ।
ମିହିର—(ସ୍ୱଗତ) ରଙ୍ଗିବାକୁ ନିଜ ଦେଶ ସ୍ୱଜନ ରୁଧିରେ,
ସ୍ୱହସ୍ତେ, ଆସିବେ ପିତା ଘାତକର ବେଶେ ।
ପୁତ୍ରର ଆକୁତି ତଥା ଜନନୀ ମିନତି,
ନ ଶୁଣିଲେ କିନ୍ତୁ ଏତେ କଠୋର ହୃଦୟ,
ହେଉ ତେବେ ଦେବ ତାଙ୍କୁ ପରମ ସନ୍ତୋଷ,
ସ୍ୱଜନ ରକ୍ତ ପିପାସା ମିଠାଇବ ତାଙ୍କ ।
ମଞ୍ଜରୀ—ଉଚ୍ଚନ ହେଉଛି ମନ ନ କର ବିଲମ୍ବ,
ନିଶ୍ଚିନ୍ତ ହୃଦୟେ ଦିଅ ସସ୍ନେହ ବିଦାୟ ।
ହେବ ନାହିଁ ଦୁଃଖ କିଛି କହ ସ୍ପଷ୍ଟ କରି,
ଜାଣିଲେ ସେତିକି ଖାଲି ହେବ ମୁଁ ନିଶ୍ଚିନ୍ତ
ମିହିର—ଯିବ ? ଯିବ ତେବେ ସ୍ୱଦେଶ କଲ୍ୟାଣେ,
ଯାଅ ବେଗେ ହେଉ ତୁମ ପଥ ଶୁଭମୟ ।
ନୁହେଁ ମୁଁ ପାତକୀ ପଥ ରୋଧିବ ତୁମର,
ସ୍ୱଦେଶ ମୋଚନେ ହେବ ମୂଢ଼ ଅନ୍ତରାୟ ।

ଯାଅ ପ୍ରିୟ, ଦଅ ତବ ଦୁର୍ଲ୍ଲଭ ଜୀବନ,
ଜନ୍ମଭୂମି ମୁକ୍ତ କଲେ ଅଞ୍ଜଳି ସ୍ୱରୂପ ।
ରଖିଥାଅ ମନେ କିନ୍ତୁ ନୁହେଁ ଏହୁ ଶେଷ,
କ୍ଷୀଣ ଏ ଜୀବନ ସତ୍ୟ, ଆତ୍ମା ଚିରଞ୍ଜିବୀ ।
ନୁହେଁ ତ ଆମର ପ୍ରେମ ଶରୀର ସମ୍ବନ୍ଧୀ,
ଶରୀର ବିୟୋଗେ ତା'ର ନାହିଁ ଅବସାନ ।
ପୃଥକ ଶରୀର ହେତୁ ଯେଉଁ ବ୍ୟବଧାନ
ହେବ ତାହା ଅନ୍ତର୍ହିତ ଶରୀର ବିୟୋଗେ ।
ଏକ ଆତ୍ମା ହୋଇ ଦୁହେଁ ବିଚରିବା ସେଠି,
ନାହିଁ ଯହିଁ ସ୍ୱାର୍ଥପାଇଁ ସ୍ୱଜନ ନିଧନ ।
ପ୍ରେମର ବନ୍ଧନେ ଯହିଁ ଗ୍ରହ ଉପଗ୍ରହ,
ପରସ୍ପର ଆକର୍ଷଣେ ବିଚରନ୍ତି ଶୂନ୍ୟେ,
ଜାତୀୟତା ଭେଦ ଯହିଁ ନାହିଁ ହିଂସା ଦ୍ୱେଷ,
ଉଠେ ଯହିଁ ଏକମାତ୍ର ପ୍ରୀତିର ଝଙ୍କାର,
ଅନନ୍ତର ସତ୍ତା ରୂପେ ସମସ୍ତଙ୍କ ହୃଦେ,
ଜଗାଏ ଅନନ୍ତ ଯହିଁ ବିଶ୍ୱ ମୈତ୍ରୀ ଭାବ ।

---

# ସମ୍ରାଟ ଓ ସାମ୍ରାଜ୍ଞୀ

ସମ୍ରାଟ—ଶୁଣିଲି ବୃତ୍ତାନ୍ତ ସବୁ ସାମ୍ରାଜ୍ୟର ମୋର,
ଜାଣିଲି କାହାର କେତେ ନାଗ୍ଧି ହୃଦ ଛବ ।
କଠିନ ସମସ୍ୟା ପୂର୍ଣ୍ଣ କିନ୍ତୁ ଏ ଜଗତ,
ନ ହୁଏ ଲୁଳିତ ନାଘ୍ୱି-ସୁଲଭ ହ୍ୱସାଦେ ।
ଦୂର ଦୂର ଗ୍ରହ ଯଥା ସୁନକ୍ଷତ୍ର ସତ୍ୟ,
ଇତସ୍ତତ ହେବାପାଇଁ ନାହିଁ ସେଠି ବାଟ,
ସେହିପରି ଜଗତର ସମସ୍ତ ହ୍ୱସାର,
ଏପାଖ ସେପାଖ ହେବା ଅସମ୍ଭବ ସେଠି ।
ସୁବର୍ଣ୍ଣ ନଗରବାସୀ ସ୍ୱାଧୀନତା ପାଇଁ,
କରିଛନ୍ତି ପଣ ଦେବେ ଜୀବନ ଆନନ୍ଦେ,
କିନ୍ତୁ ଏ ସାଧାରଣ ନାସ୍ୱଭାବ ଯୋଗ୍ୟ,
ନ ହେବ ଏହା କେବେ ଦୁନିଆ ନିକଟେ ।
ଜୀବନ ଅର୍ପଣ ନୁହେଁ କବର କଥା,
ଅଥବା ବକ୍ତାର ମଞ୍ଚେ ବଚନ ଆସ୍ଫୋଟ ।
ଏ ଯେ ଅତି ପ୍ରିୟତମ ବସ୍ତୁର ବିୟୋଗ
ସହସ୍ରକେ ଜଣେ ସୁଦ୍ଧା ନ ପାରିବେ କରି ।
କରିଛି ଯେ ପ୍ରାଣଦାନ କହୁଛ ସନ୍ନ୍ୟାସୀ,
ନମସ୍ୟ ସେ, ନୁହେଁ ସେହି ସାଧାରଣ ନର ।
ଶତବର୍ଷେ ସେହିପରି ଅତି-ମାନବର,
ଜନମ ବିରଳ, ତାର ସାକ୍ଷୀ ଇତିହାସ ।

ଜାଣେ ମୁଁ ନିଶ୍ଚିନ୍ତ ସେହି ଆତ୍ମଦାନ ନୀତି,
ହେବେହେଲେ ଦେଶବ୍ୟାପୀ ନ ହେବ ଗୃହୀତ ।
ସନ୍ନ୍ୟାସୀର ସନ୍ନିକଟ ଅନୁଗାମୀ ସୁଦ୍ଧା,
ନ ହେବ ସମର୍ଥ କେବେଁ ନିଜ ପ୍ରାଣଦାନେ ।

**ସାମ୍ରାଜ୍ଞୀ**—ଏକପ୍ରାନ୍ତୁ ଅନ୍ୟ ପ୍ରାନ୍ତେ ବିଶାଳ ଦେଶର,
ପୁରପଲ୍ଲୀ ଗିରିନଦୀ କାନନ କାନ୍ତାର,
ଆବାଳବୃଦ୍ଧ ବନିତା ସବୁ ଦେଶବାସୀ;
ମାନନ୍ତି ସେ ସନ୍ନ୍ୟାସୀଙ୍କୁ ଅବତାର ବୋଲି ।
ନାଚିଉଠେ ହୃଦ ତାଙ୍କ ସେ ନାମ ଶ୍ରବଣେ,
କରନ୍ତି ସମସ୍ତେ ତାଙ୍କ ଜୟ ଜୟକାର ।
ନିରର୍ଥ ନ ଯିବ କେବେଁ ମରଣ ବରଣ
ମହାମାନବଙ୍କ, ଦେଶ ମୁକତି କଳସେ ।
ଏପ୍ରକାରେ ବିତାଡ଼ିତ ହୋଇଯିବା ଆଗୁଁ,
ବରଂ ଭଲ ମାନେ ମାନେ ଅପସରି ଯିବା ।
ଉତ୍ତେଜିତ ନାଗପରି ଉତ୍ତ୍ୟକ୍ତ ଜନତା,
ମରଣ ଦଂଶନ ଦେବେ ମାତୃପୂଜ୍ୟ ରାଜେ ।
ଗୁଲିଯିବ ଯଶ ତବ ବିଭବ ସହିତେ,
ନିନ୍ଦନୀୟ ହେବ ସିନା ନିର୍ଧନ ଜଗତେ ।

**ସମ୍ରାଟ**—ସବୁ ଯୁକ୍ତି ମନେ ମନେ କରୁଛି ଓଜନ,
ଜାଣେ ମୁଁ କାହାର ମୂଲ୍ୟ କେତେ ବ୍ୟବହାରେ ।
ଜୀବନ ଦର୍ଶନ ଜଣା ସେ ଦେଶବାସୀଙ୍କ,
ଜାଣେ ମୁଁ କପରି କରେ ଗତି ତାଙ୍କ ମନ ।
କରନ୍ତି ସମ୍ମାନ ସବେ ସନ୍ନ୍ୟାସୀଙ୍କୁ ସତ,
ଈଶ୍ୱରଙ୍କ ଦୂତ ବୋଲି ମାନନ୍ତି ସମସ୍ତେ,

ସେତିକରେ ତାଙ୍କ ସାଙ୍ଗ କର୍ତ୍ତବ୍ୟ ପ୍ରେରଣା,
ନ ଯାନ୍ତି ପାହୁଣ୍ଡେ ସ୍ବଦ୍ଧା ଆଗକୁ ସେ ସ୍ଥାନୁ ।
ଭାବନ୍ତି ସନ୍ନ୍ୟାସୀ ଆଣିଦେବ ଦେଶମୁକ୍ତି,
ନିଜେ କଷ୍ଟ କରିବାର ନାହିଁ ସେମାନଙ୍କ ।
ମରିଛି ସନ୍ନ୍ୟାସୀ ଗ୍ଭଲି ଯାଇଛି ତା' ସଙ୍ଗେ,
ସୁବର୍ଣ୍ଣ ନଗର ମୁକ୍ତି ଆନ୍ଦୋଳନନାୟକ ।
ଏଣିକି ସେ ଦେଶବାସୀ କରି ହାୟ୍ ହାୟ୍,
ତୋଳିବେ ମନ୍ଦିରମାନ ସନ୍ନ୍ୟାସୀର ନାମେ,
ହୁଏତ ସନ୍ନ୍ୟାସୀ ମୂର୍ତ୍ତି ସ୍ଥାପିବେ ତହିଁରେ,
ପୂଜା କରି ନାନାବିଧେ ଲଭିବେ ସନ୍ତୋଷ ।
ଅସଂଖ୍ୟ ଦେବତା ଛନ୍ତି ଜାଣିତ ସେ ଦେଶେ,
ତହିଁ ସଙ୍ଗେ ଆଉ ଏକ ଯୁକ୍ତ ହେବ ମାତ୍ର ।
ଯଦି କେହି କେହି ଅବା ହୋଇ ଉତକ୍ଷିପ୍ତ,
କରନ୍ତି ବିଦ୍ରୋହାଗ୍ଭର ମୋ ଶାସନ ସଙ୍ଗେ,
ରହିଛନ୍ତି ମୋ ଆଦେଶେ ସେହି ଦେଶବାସୀ,
ଦମିବାକୁ ସେ ଉନ୍ମାଦ ସମସ୍ତ ପ୍ରକାରେ ।
ତା' ପରେ ନ ପାଇ ବାଟ ଜନ୍ମାନ୍ତର ବାଦୀ,
ସେ ଦେଶ ଜନତା ଦୋଷି ନିଜର ଅଦୃଷ୍ଟ,
ରହିଯିବେ ଶାନ୍ତ ହୋଇ ଭୁଲି ସ୍ବାଧୀନତା,
ବିଧିର ବିଧାନ ବୋଲି ମଣିବେ ମୋ ରାଜ ।
ସାମ୍ରାଜ୍ଞୀ—ନ ମିଳନ୍ତି ଯଦି କେହି ସେ ଦେଶ ନିବାସୀ,
ନେବାକୁ ସମ୍ଭାଳି ସେଠା ଶାସନ ତୁମର
ତେବେ ତ ହୋଇବ ବାଧ୍ୟ ଗ୍ଭଡ଼ିବ ସାମ୍ରାଜ୍ୟ,
ଅକାରଣ ନେବ ସିନା ଅଯଶ ସ୍ବୀକରେ !

ସମ୍ରାଟ—ଅବଶ୍ୟ ହେଲେ ସେ ଦଶା ସେଠି ଉପସ୍ଥିତ,
ଓତଃ ପ୍ରୋତ ଜାତୀୟତା ବନ୍ଧନ ଏପରି,
ଅଦୃଷ୍ଟ ଗୁଡ଼ ସେ ଦେଶ ନିଷ୍କ୍ରିୟ ଜନତା,
ମାତିଯାନ୍ତି କାର୍ଯ୍ୟେ ଯଥା କହନ୍ତୁ ସନ୍ନ୍ୟାସୀ,
ଉତ୍କିଷ୍ଟ ହୁଅନ୍ତି ଯେତେ କରନ୍ତୁ ସାହାଯ୍ୟ,
ମୋ ଶାସନେ ନିଜ ପାଇଁ ସେ ଦେଶନିବାସୀ,
ସ୍ୱେଚ୍ଛାରେ ଅଥବା ପଡ଼ ପରିସ୍ଥିତି ଚକ୍ରେ,
ନ କରନ୍ତି ଆମ ସହ କେହୁ ସହଯୋଗ,
ତେବେ ଯାଇ ଛାଡ଼ିବାକୁ ହେବ ସେ ସାମ୍ରାଜ୍ୟ,
ଆପେ ଆପେ ଅପସରି ଯିବାକୁ ପଡ଼ିବ ।
ନ ମିଳେ ସୂଚନା କିଛି ଆଜି ସେ ଦଶାର ।
ବହୁଦୂରେ, ଅତିଦୂରେ ଦିଗ୍ବଳୟ ପାଖେ,
ଦିଶୁଛି ଝଲକ ମନ୍ଦ ସେପରି ଦଶାର ।
ନାହିଁ ଚିନ୍ତା ଆଜି ତେଣୁ ସେ କାରଣେ କିଛି,
ଗୁଳିବ ଦୁନିଆ ଯଥା ଆସିଅଛି ଗୁଳି ।
ସାମ୍ରାଜ୍ଞୀ—ନିଜର କର୍ତ୍ତବ୍ୟ କିଛି ନାହିଁ କି ଏଥିରେ,
ନ ପଡ଼ିଲେ ଧରା କଣ ଚୋର ହୁଏ ସାଧୁ ?
ନିର୍ବଳ ଅଳସ ବୋଲି ସୁବର୍ଣ୍ଣ ନଗର,
କେଉଁ ନ୍ୟାୟେ କରି ରଖ ସେ ଦେଶ ଅଧୀନ ।
ନିଜର କର୍ତ୍ତବ୍ୟ ଜ୍ଞାନ କରେ କି ପୋଷଣ,
ରାଜ୍ୟାପହରଣ ନିଜ ଦେଶ ସ୍ୱାର୍ଥ ପାଇଁ ?
ସମ୍ରାଟ—କର୍ତ୍ତବ୍ୟ ବିଚାର ପାଇଁ ନାହିଁ ମାପ କାଠି
ଗୋଟିଏ, ଜଗତେ ସବୁ ଅବସ୍ଥା ସକାଶେ ।
ନ୍ୟାୟ ବୋଲି ଦିଶେ ଯାହା ଅବସ୍ଥା ବିଶେଷେ,

ଅନ୍ୟଠାରେ ଅନ୍ୟାୟ ବୋଲି ହୁଏ ପ୍ରମାଣିତ ।
ସଂଘର୍ଷ ମୂଳକ ଏହି ଅସ୍ଥିର ସଂସାର,
ପରସ୍ପର ଠେଲାଠେଲି ଚାଲିଅଛି ଯହିଁ,
ପାରିବ ଯେ ଠେଲି ଦେଇ ଅପରକୁ ଭିଡ଼େ,
ଯିବ ସେ ଆଗକୁ କରି ପଥ ପରିଷ୍କାର ।
ଅନ୍ୟଥା ଚାଲୁଥିବ ହେବ ତା' ସତ୍ତ୍ୱ ସମୂଳେ,
ହୋଇଯିବ ଦଳିମଳି ପିମ୍ପିଳିକାପରି ।
କରି ନାହିଁ ମନା କେବେ ସାମ୍ରାଜ୍ୟବାଦୀଙ୍କୁ,
ହେବାପାଇଁ ଉଦବୁଦ୍ଧ ଜାତୀୟତା ଭାବେ,
ନମାନି ଦମନ ହେବାପାଇଁ ସଂଘବଦ୍ଧ,
ସମ୍ଭାଳି ନିଜର ଲୋଭ ସ୍ୱାର୍ଥର ଲାଳସା,
ବର୍ଜ୍ଜନ ଆଚରିବାକୁ ମୋ ଶାସନ ସହ ।
କଲେ ତ ସେତିକି ଠେଲି ଦଅନ୍ତେ ସେମାନେ,
ଯାଆନ୍ତେ ଆଗକୁ ଚାଲି ବିନା ଯୁକ୍ତିତର୍କେ ।
ଦୁର୍ବଳ କରଇ ଯୁକ୍ତି ଦେଇ ନ୍ୟାୟ ଦୋହି,
ସବଳ ଯାଅଇ ମାଡ଼ି ନ୍ୟାୟ ସୃଷ୍ଟି କରି ।

———

# ଦାସ ପୁଅ ଓ ମହାପାତ୍ର

ଦାସପୁଅ—କହ ମହାପାତ୍ରେ କାଲି ମଜାର ଘଟଣା,
ଶୁଣିବାକୁ ଚାହେଁ ସବୁ ମୁହିଁ ଶେଷ ଯାଏଁ ।
ମହାପାତ୍ରେ—ନ ଥିଲକି ତୁମ୍ଭେ କାଲି ଆମ ଏ ଗାଆଁରେ,
କେଉଁଠି ଲୁଚିଲ ଯାଇ ଅସଲ ବେଳକୁ ।
ଦାସପୁଅ—ଲୁଚିବି କାହିଁକି ଥିଲା ବଡ଼ କାମ ମୋର
ନ ପାରିଲି ରହି କାଲି ସଭା ଶୁଣିବାକୁ ।
ମହାପାତ୍ରେ—ବୁଝୁଛି ମୁଁ ଦାସପୁଅ ସବୁ ତୁମ କଥା,
ଲଗାଇ ତାମସା ନିଜେ ଖସିଗଲ କାହିଁ ।
ଦାସପୁଅ—ଛାଡ଼ ସେ କଥା ତୁ କହ କାଲିକା ଘଟଣା,
ଶୁଣେ ମୁଁ ପବିତ୍ର ହେଉ ଶ୍ରବଣ ମୋହର ।
ମହାପାତ୍ରେ—ଉତୁରି ପଡ଼ିଲେ ଦୁଧ ଯାଏ ସେ ଚୁଲିକୁ,
ନୋହିବ କେବେ ଏ ମିଛ ଋଷିଙ୍କ ବଚନ ।
ଦେଖିବ ଅଳପଦିନେ ବିଜୟକୁମାର,
ନାଶଯିବ ଅଳ୍ପଦିନେ, ହେଲାଣି ଗରବ ।
ଦାସପୁଅ—ହେଲା କଣ କହ ସବୁ ଶୁଣେ ମୁଁ ଘଟଣା
ଠିକଠିକ କରି କହ ମୁହିଁ ଶେଷଯାଏ ।
ମହାପାତ୍ରେ—କହିବି କଅଣ ମୋର ଅଛି ନାଁ ବଚନ,
କହିବାକୁ ହେଲା ଯାହା ଘଟଣା ସେଠାରେ,
ଦେଖିଥିବେ ଚଉଆଡ଼େ ଦଶଦିଗପାଳ,
ରହିଥିବେ ଦେବତାଏ ସରଗୁଁ ଅନାଇ,

ଜ୍ୱାଇ ଯାଇଥିବ ବନ୍ଧ ସମସ୍ତଙ୍କ ଆଖି,
ଅସୁର ପ୍ରତାପ ଦେଖି କାଲି ମର୍ତ୍ତ୍ୟପୁରେ ।
ଦାସପୁଅ—ଆସିଥିଲେ ନିଜେ କାଲେ ବିଜୟକୁମାର,
ଫିଜିକ ବନ୍ଧୁଙ୍କ ଟଙ୍କା ଆସିଥିଲେ କେତେ
କହ ସବୁ ଖୋଲିକରି କାଲିକା ଘଟଣା,
ସଭା କଥା, ଦେଖିଲ କିଏ, ମଲେ କେତେ ଲୋକ ।
ମହାପାତ୍ର—ରଜା ଯେ ଅନାଏ ସିନା ପରଜା ମୁହଁକୁ,
ଅନାନ୍ତି ଆମର ରଜା ତାଙ୍କ ଗୁରୁଙ୍କୁ ।
ପରଜାଙ୍କ ପାଇଁ ସିନା ରହନ୍ତି ଗୁରୁ,
ଏ ରାଜ୍ୟେ ରହନ୍ତି ପ୍ରଜା ଗୁରୁଙ୍କ ପାଇଁ,
ପ୍ରଜାଙ୍କୁ ଗଂଜିବା ପାଇଁ ପ୍ରଧାନ କଥାରେ,
ଆସିଲେ ହାକିମ ନେଇ ସାଜବାଜ ସାଙ୍ଗେ ।
ତା' ଅଗରୁ ଆସିଥିଲେ, ମାଆ ଦୁର୍ଗା ନିଜେ,
ସେହିପରି ରୂପ ତାଙ୍କ ଦେବ ଭୁଲିଣିଅ,
ସେହିପରି ରୂପ ତାଙ୍କ ମହିଷାମର୍ଦ୍ଦିନୀ,
ବାହାରୁ ଥିଲା କି ସତେ ଦୁଇ ନେଇଁ ନିଆଁ,
ପୋଡ଼ି ଦେବାପାଇଁ ଯେତେ ଅଛନ୍ତି ରାକ୍ଷସ !
ଫୁଟିଥିବା ପୁରା ପଦ୍ମ ପାଖୁଡ଼ା ଭିତରେ,
କଅଁଳିଆ ଖରା ପଡ଼ି ସକାଳିଆ ବେଳେ,
ଦୁଇ ବୁନ୍ଦା ପାଣି ଯେଉଁ ଦିଶେ ଜଳଜଳ,
ସେହିପରି ଦିଶୁଥିଲା ନେଳ ଦୁଇ ତାଙ୍କ
ଚନ୍ଦ୍ରମା ମଣ୍ଡଳେ ଅବା ଦୁଇ ସୂର୍ଯ୍ୟ ଛନ୍ଦ ।
ବୟସ ନୁହଇ ବେଶୀ, ନ ଥିଲା ତଥାପି
ପିଲିଳିଆ ଢଙ୍ଗ କିଛି ସେହି ମୁହଁଟିରେ ।

ସବୁବେଳେ ଖେଳୁଥିଲ ହସଟିଏ ଯେସନେ,
ପ୍ରତିପଦ ଶୁଦ୍ଦପର ତାଙ୍କ ଓଠଟିରେ ।
ଶୁହିଁଦେଲେ ଯାଉଥିଲା ଜୁଡ଼ାଇ ଆଖି,
କଏ ଜାଣେ କେଉଁ ଦେବୀ ଅସିଥିଲେ ଢାଳି ।
ଦାସପୁଅ—ଜାଣିଛିକି ନାଆଁ ତୁମେ ସେହି ଦେବୀଙ୍କର ?
ମହାପାତ୍ରେ—କହୁଥିଲେ ନାଆଁ ତାଙ୍କ ଶ୍ରୀମତୀ ମଞ୍ଜିରୀ ।
ଦାସପୁଅ—ଦେଖିଛି ମୁଁ ତାଙ୍କୁ କଥା ଶୁଣିଛି ତାଙ୍କର,
ତା'ପରେ କି ହେଲା କହ ଶୀଘ୍ର ଶୀଘ୍ର କରି ।
ମହାପାତ୍ରେ—ଯଦି ଥାନ୍ତେ ବାଲ୍ମିକୀ ଅବା ବ୍ୟାସଦେବ
ଲେଖିଥାନ୍ତେ ବଡ଼ ପୋଥି ବାଳିକା କଥାର,
ସ୍ଥିର ମୁଁ ମୂରୁଖ କିବା କହିବି ବୃତ୍ତାନ୍ତ
ଘଟିଲା ଯା' କାଲି ନିଜ ଆଖି ଆଗେ ମୋର ।
ଆଗରୁ ପହୁଞ୍ଚି ଦେବୀ ଡାକି ସମସ୍ତଙ୍କୁ,
ବୁଝାଇଲେ ଦମ୍ଭ ଧରି ରହିବାକୁ ଗ୍ରାମେ ।
"ଆସନ୍ତୁ ଫଉଜ ଯେତେ ନ ଡର କାହାକୁ,
ବାର ପର ଛିଡ଼ାହୁଅ ଛାତି ଉଞ୍ଚା କରି
ମାରନ୍ତୁ ମାରିବେ ଯେତେ ବନ୍ଧୁକର ଗୁଳି,
ନ ବାଜୁ ଗୋଟିଏ ଗୁଳି ପିଠିରେ କାହାର,
ପିଅନ୍ତୁ ସେ ଗୁଳିଯାକ ଛାତିର ରକତ,
ମେଣ୍ଟିଯାଉ ଫଉଜଙ୍କ ନରହତ୍ୟା ଶୋଷ ।
ପଡ଼ିଯାଉ ଶହ ଶହ ଶବ ଏ ଭୂଇଁରେ,
ତେବେ ଯାଇ ଜନ୍ମମାଟି ହେବ ପରସନ୍ନ,
ସୈନ୍ୟ ଭାଇଙ୍କର ତେଣେ ବଦଳିବ ମନ,
କମ୍ପିବ ବସୁଧା ତୁମ ରକ୍ତ ଗନ୍ଧ ପାଇ,

ଅନନ୍ତ ଶତ୍ରୁଙ୍କୁ ନିଜେ ଉଠିବେ ବିଧାତା,
ଲିଭିଯିବ ଯେତେ ଦୁଃଖ ଦୁର୍ଦ୍ଦଶା ତୁମର,
ଖରାରେ ଉଭେଇ ଯାଏ କାକର ଯେପରି।"
ଏହିପରି କେତେ କଥା କହିଲେ ସେ ଦେବୀ,
ମଣିଷ କଥା ନାଁ ସେତ ଭରତ ବାଠୁଳି।
ଠାଏଁ ଠାଏଁ ବାଜୁଥାଏ କାନେ ତାଙ୍କ କଥା,
ସତଷଠି ଶୀତ ଭୋଗୀ ପାଣି ମୋ ରକତ,
ଶୁଣି ସେ ବଚନ ହୋଇ ଉଠିଲା ଗରମ।
ମନେ ହେଲା କେହି ଅବା କରି କାୟାକଳ୍ପ,
ବୁଢାକୁ ଜୁଆନ କଲା ପଚିଶ ବର୍ଷର।
ମାତିଲେ ଗାଁର ଲୋକ ଜୀବନ ମୁହୂର୍ତ୍ତ,
ହୁଳହୁଳି ଦେଲେ ବୋହୂ ଭୁଆସୁଣୀ ଯେତେ।
ପରଦିନ ଗାଁ ମୁଣ୍ଡ ପଡ଼ିଆ ମଝିରେ,
ଯେଉଁଠି ମିଳନ ହୁଏ ଦୋଳପୂର୍ଣ୍ଣିମାକୁ,
ଶହ ଶହ ରୁଣ୍ଡ ଆସି ହୁଅନ୍ତି ବିମାନ,
ଅବିର ଖେଳନ୍ତି ଲୋକେ ମାରି ପିଚକାରୀ,
ଲାଲେ ଲାଲ ହୋଇଯାଏ ସାରା ମଇଦାନ,
ସେଇଠି ହେଲା ଏ ହୋଲି ନୂଆଁ ରକମର।
ଆମ ଗାଁ ଆଖପାଖ ଯେତେ ଗାଆଁ ଅଛି,
ଆସିଲେ ସଭିଙ୍କୁ ଧାଇଁ ଘରବୋହୂ ସୁଙ୍ଗା,
କୋଳେ ନେଇ ଛୋଟ ଛୋଟ ଦୁଧପିଆ ଛୁଆ।
ପୂରିଗଲା ପଡ଼ିଆରେ ନ ରହିଲା ଜାଗା,
ପଡ଼ିଗଲେ ଛୁଞ୍ଚି ମୁଣ୍ଡା ନ ପଡ଼ିବ ତଳେ,
ଏହିପରି ସମାଗମ ସାଗର ଲୋକଙ୍କ।

ବଢ଼ିପାଣି ନଈ ଢେଉଁ ମାଡ଼ିଗଲା ପରି,
ପଢ଼ୁଆ ପୁରଙ୍କ ଲୋକେ ବଲେ ଗଲେ ମାଡ଼ି ।
ସତ ମୁଁ କହୁଛି ହେଲା ଏତେ ମୋ ବୟସ,
ଦେଖି ମୁଁ ନ ଥିଲି କେବେ ଏଡ଼େ ବଡ଼ ସଭା ।
ସଭା ମଝି ଛିଡ଼ା ହେଲେ ଶ୍ରୀମତୀ ମଞ୍ଜରୀ,
ଲାଗିଲେ ବୁଝାଇବାକୁ ଗୁରୁଆଡ଼େ ଚାହିଁ,
ଗୁରୁଆଡ଼େ ଚାହିଁ କେଳା ଡମ୍ବରୁ ବଜାଇ,
ପଦ ତୋଳା ପଢ଼ି ସାପ ଖେଳାଇଲା ପରି ।
ଚାହିଁଥାନ୍ତି ସବୁଲୋକେ ଦେବୀଙ୍କ ମୁହଁକୁ,
ମନ୍ତ୍ର କରାହେଲା ପରି ଏକଧ୍ୟାନ ହୋଇ ।
ନିଶବଦେ ସାରା ସଭା ଅଧଘଣ୍ଟା ପରେ,
ଅନର୍ଗଳ ଚାଲିଥାଏ ମୁହଁ ଦେବୀଙ୍କର ।
"ହାଇଜା ବସନ୍ତ ଜରେ ମରୁଛ ତ ନିତ,
ଶହ ଶହ ଅନିଚ୍ଛାରେ ଗୁରୁଅଡ଼େ କେତେ,
ଯାଉଛି ଜୀବନ ମାନ ଅକାରଣେ ତାହା,
ସେ ମରଣ ପଶୁପକ୍ଷୀ ମରଣ ସମାନ ।
ମରିପାର ଯଦି ତୁମେ ମଣିଷଙ୍କ ପରି
ବଞ୍ଚିବ ମଣିଷ ପରି ତେବେ ଯାଇଁ ନିଶ୍ଚେ,
ଭଲକରି ଜାଣେ ଯେହୁ ମରଣର ମୂଲ୍ୟ
ଜୀବନ ତାହାର ଅଟେ ଅତି ମୂଲ୍ୟବାନ
ନିରର୍ଥକ ମୂଲ୍ୟହୀନ ପଶୁର ମରଣ,
କରୁଛି ଜୀବନ ତୁମ ପଶୁଠାରୁ ହୀନ
ଦିଅ ପ୍ରାଣ ତେଣୁ ସବେ ସ୍ୱଦେଶ କଲ୍ୟାଣେ,
କିଣିନିଅ ସ୍ୱାଧୀନତା ପ୍ରାଣ ମୂଲ୍ୟ ଦେଇ ।"

ଏହିପରି ଭୀମରଡ଼ ଦେଉଥାନ୍ତି ଦେବୀ
ଉଠୁଥାଏ ପ୍ରେମମୂଳ ସଭିଙ୍କ ଠାକୁର ।
ଏ ସମୟେ ପହୁଞ୍ଚିଲେ ସରକାର ସୈନ୍ୟ,
ନିଜେ କର୍ତ୍ତା ଆଗେ ଥିଲେ ରାଜପୁକୁମାର ।
ମାଟିଆ ପୋଷାକ ତାଙ୍କ ଚମଡ଼ାର ପେଟି,
ବଡ଼ ବଡ଼ ଦିଶୁଥାଏ ମଥାରେ ପଗଡ଼ି ।
ମଝିଟି ଗୁହାଁଣି ତାଙ୍କ ବାଘପରି ଢେଳା,
ଚକଚକ ଟ୍ଳୋର ସହ ହାତରେ ବନ୍ଧୁକ,
ଆସିଲେକି ମାଡ଼ି ଆଜ ରାକ୍ଷସ କୁଆଡ଼ୁ,
ଗିଳିସିପିବାକୁ ଗାଁ ଗଣ୍ଡା ଗୁରୁଆଖ !!!
ଚୁହିଁଦେଇ ତାଙ୍କୁ ଗୁଣ୍ଡି ଥରିଗଲା ମୋର,
ଉଠିଗଲି ଭାବିଦେଇ କି ଜାଣି କି ହେବ ।
ଚୁହିଁଦେଲି ପୁଣି ଯେବେ ଦେବୀଙ୍କ ମୁହକୁ,
ଆସିଗଲା ଦମ୍ଭ, ଛାଡ଼ି ପଳାଇଲା ଭୟ ।
ନମ ତମ ହୋଇ ଆଗେ କହିଲେ ବିଜୟ,
"ବନ୍ଧକର ସଭା ଏଠୁଁ ଗୁଲିଯାଅ ସବୁ ।
"ନ ମାନିବୁ ତୁମ ଆଜ୍ଞା" କହିଲେ ମଞ୍ଜରୀ ।
ହରିବୋଲ ହୁଳହୁଳି ପଡ଼ିଲା ଉଚ୍ଛୁଳି ।
ଥରି ଯାଉଥାଏ ଓଠ ବିଜୟଙ୍କ ଆଗେ,
ବାହାରୁ ନଥାଏ କଥା ପାଟିରୁ ତାଙ୍କର ।
କମ୍ପି କମ୍ପି ବଡ଼ପାଟି କହିଲେ ଗରଜି,
'ଗୁଲିଯାଅ, ହେବ ଗୁଳି, ନ ଗଲେ ଜଲଦ ।'
ହସିଦେଇ ଅଳ୍ପଧୀରେ କହିଲେ ମଞ୍ଜରୀ,
ଖସିବେଳେ ଅମୃତଝୋଟା କୋଇଲିର ସ୍ୱରେ,

“ଆସିଛ ଦେଖାଇବାକୁ ମରଣର ଭୟ,
‘ପାଣିପରି ମରଣକୁ ଦେଇଅଛୁଁ ପିଇ,
‘ମାର ଗୁଳି ଭୁଷ ଙ୍ଗେରା, କର ଯାହା ପାର
‘ନ ଟଳିବୁ ଟିକେ ହେଲେ ଆମ ନିଜ ସ୍ଥାନୁଁ ।
‘କରିଛୁଁ ଜୀବନ ପାଣି ସ୍ୱାଧୀନତା ପାଇଁ,
‘ନ ବଞ୍ଚିବୁଁ ଆମେ କେବେ ପରାଧୀନ୍ ଦେଶେ ।
‘ମାରନ୍ତା ଯଦବା କେହି ମାୟାପୁରୀ ବାସି,
‘ମଣନ୍ତୁ ପରମ ଭାଗ୍ୟ ମରି ତାଙ୍କ ହାତେ,
‘ଯେହେତୁ ସ୍ୱଦେଶୀ ତୁମେ ଆମ ଭାଇ ସବୁ,
‘ନ ମିଳବ ପୁରୀ ତୋଷ ମରି ତୁମ ହାତେ ।
‘ଦେହଗୁଡ଼ି ଅନ୍ତରାତ୍ମା ଯିବ ଯେବେ ଉଡ଼ି,
‘ରହିଯିବ କାଳ କାଳ ପାଇଁ ମନେ ତା’ର,
‘ଭାଇହାତେ ଭାଇ ମରେ ପରର ସ୍ୱାର୍ଥେ ।
‘ଏ ଯେଉଁ ଫଉଜ ସଙ୍ଗେ ଆଣିଛ ବିଜୟ,
‘ନୁହନ୍ତି କି ସବୁ ଆମ ବାପ ଭାଇପରି ?
‘ବହୁଛନ୍ତେ ରକ୍ତ ତାଙ୍କ ଶିରା ପ୍ରଶିରାରେ,
‘ନ ବହେକି ସେହି ରକ୍ତ ଆମର ଶରୀରେ ?
‘ନାହିଁ କଷ୍ଟ ଆମ ହାତେ ରକ୍ତପାତ ପାଇଁ,
‘ଆମରି ଭାଇଙ୍କ, ଏକା ମାଆଟି ଆମର,
‘ନିଅନ୍ତୁ ସେ ରକ୍ତ ତାଙ୍କ ଭାଇ ଭଉଣୀଙ୍କ,
‘ଦିଅନ୍ତୁ ସେ ରକ୍ତେ ରଙ୍ଗି ମାଆର ଶରୀର,
‘ପୂରନ୍ତୁ ସେ ମନକୁ କାହାସ୍ୱାର୍ଥ ପାଇଁ,
‘ମାରିଦେବେ ଅସଙ୍କୋଚେ ଭାଇ ଭଉଣୀଙ୍କୁ,

ଦାସପୁଅ—କହିଲେ ଏପରି ଦେଖା ଶୁଣାଇ ସୈନ୍ୟଙ୍କୁ ।
ତା'ପରେ କହେଲା କହ ଶୀଘ୍ର ଶୀଘ୍ର କରି ।
ମହାପାତ୍ରେ—ବିଜୟଙ୍କ ଗୋରା ମୁହଁ ହୋଇଗଲା ନାଲି,
ନ ଭାବ ସେ କଥା ଶୁଣି ଗଲେ ସେ କାଟେଇ ।
ପିତଳ ବର୍ଣ୍ଣନପରି ତତଲା ଚୁଲିରେ,
ଉଠିଲେ ଗରମ ହୋଇ ଫଣ ଫଣ ମୁହଁ,
ଗରଜି ହୁକୁମ ଦେଲେ ଉଚେ ଫଉଜଙ୍କୁ,
'ସଜାଡ଼ ବନ୍ଧୁକ ବେଗେ ହୁଅ ହୁସିଆର ।'
ହରିବୋଲ ହୁଲାହୁଳି ପଡ଼ିଲା ଉଚ୍ଛୁଳି
ସମୁଦ୍ର ଜୁଆର ଭଳି ହୋଇଗଲା ସଭା ।
ଲୋକେ ଆଉ ଦେବେ ଅବା ଧୂଳିରେ ମିଶାଇ,
ହାକମ ସହିତେ ସୈନ୍ୟ ସମସ୍ତଙ୍କୁ ସେଠି !
କହିଲେ ମିନତି କରି ଶ୍ରୀମତୀ ମଞ୍ଜିରି,
'ଶାନ୍ତ ହୁଅ ହାତଯୋଡ଼ି କରୁଛି ନେହୁରା,
'ମରିବା ଆମର କାମ୍ ମାରିବାତ ନୁହେ,
'ଶାନ୍ତ ହୁଅ ମାରନ୍ତୁ ସେ ଗୁଳିମାନ ଯେତେ,
'ଭାଇ ଭଉଣୀଙ୍କ ରକ୍ତ ଚାହିଁବେ ସେ ଶେଷେ ।''
ଶୁଣି ଏ ବଚନ ଶାନ୍ତ ହୋଇଗଲେ ଲୋକେ,
ନଈ ବଢ଼ିପରି ଯେବେ ପଡ଼ଇ ଦକ୍ଷିଣା ।
ସେ ଆଡ଼େ ସମ୍ଭାଳେ କିଏ ବିଜୟଙ୍କ ରାଗ,
ନାଚିଗଲେ ଦାଣ୍ଡେ ହୋଇ ନିଆଁ ବାଣପରି ।
ଭୁହାଇ ଭୁହାଇ ଦେଲେ ହୁକୁମ ସବୁରିଏ,
ବନ୍ଧୁକ ଚଳାଇବାକୁ ମାରିବାକୁ ଗୁଳି ।
ଥରେ ସେ କହିଲେ ପୁଣି ଥରେ ଆଉଥରେ,

ମୂର୍ତ୍ତିପରି ହୋଇଥାନ୍ତି ଛିଡ଼ା ସେ ଫଉଜ ।
ଆଉଥରେ ପୁଣି ଫେଟବ କଲେ ଶରଜାନ,
ଫଉଜ ଭିତରୁ ଜଣେ ହୋଇ ଆଗଭର,
କହିଲା, 'ପାରିବୁ ନାହିଁ ଚଳାଇ ବନ୍ଧୁକ
'ଅକାରଣ ନରିହ ଏ ଲୋକଙ୍କ ଉପରେ,
'ଅଛନ୍ତି ବାଳକବୃଦ୍ଧ ନାରୀ ଜମା ହୋଇ
'ଆମରି ଗାଁରି ଲୋକ ପଡ଼ୋଶୀ ବାନ୍ଧବ.
'ମାରିସ୍ଥାଙ୍କୁ କେଉଁ କୀର୍ତ୍ତି ଲଭିବୁ ସଂସାରେ ।"
ପୁଣି ଥରେ ହରବୋଲ ହୁଲ ହୁଳି ଶବ୍ଦ
ଉଠିଲା ଲହରୀ ପରି ଏ ମୁଣ୍ଡୁ ସେ ମୁଣ୍ଡ ।
ପୁଣି ଶାନ୍ତ କରାଇଲେ ଶ୍ରୀମତୀ ମଞ୍ଜରି,
କହିଲେ ବିନୟୁକରି ବିଜୟେ ବଚନ ।
'ଦେଇଛୁ ଜନମ ପରି ଏହି ଜନ୍ମ ମାଟି,
'ମରଣେ ପୁଣି ତା' କୋଳେ ପବିତ୍ର ଲେଉଟି,
'କାହିଁକି ଦୋରେହା କର ନିଜମାଆ ସହ,
'ଯେତେଥିଲେ ହୋଇବକି ନିଜ ସାଙ୍ଗପର ?
କିଏ ବା ଶୁଣୁଛି ତାଙ୍କୁ, କ୍ରୋଧେ ଜରଜର
ଅସମ୍ଭାଳ ହୋଇ ନିଜେ ଛଡ଼ାଇ ବନ୍ଧୁକ,
ଫଉଜ ଜଣଙ୍କଠାରୁ, ଧରି ନିଜ ହାତେ,
ମାରିଗଲେ ଗୁଳି କେତେ ସଭା ଗୃହଆଡ଼େ ।
ନ ଦଶଇ ବୁଦ୍ଧି ଯେହ୍ନେ ଘର ପୋଡ଼ିବେଳେ,
ଖାଆନ୍ତି ହାଉଳି ହୋଇ ଯାଇ ଲଣ୍ଡ ଭଣ୍ଡ,
ସେହିପରି ସଭା ଲୋକେ ହେଲେ ଛନ୍ନ ଛନ୍ନ,
ପଳାଇଲେ କେ କୁଆଡ଼େ ନାହିଁ ତା' ଠିକଣା ।

ଘେରିଗଲେ ଥୋକେ ଆସି ବିଜୟ କୁମାରେ ।
ବସିଥିଲି ଅଳ୍ପ ଦୂରେ ମଞ୍ଜରୀଙ୍କ ଠାରୁ,
ଥରିଗଲା ପ୍ରାଣ ମୋର ବନ୍ଧୁକ ଆବାଜେ ।
ସାଏଁ କରି ଏକଗୁଳି ଗୁଳିଗଲା ବେଗେ
ପାଖ ଦେଇ ମୋର ଏହି, ଉଠିଲି ଚମକି ।
ଗୁହୁଁ ଗୁହୁଁ ପଡ଼ିଗଲେ ତଳେ ସେ ମଞ୍ଜରି,
କାଟିଦେଲା ଗଛପରି ଅଣ୍ଡି ପିଞ୍ଜାକରେ ।
ସାଙ୍ଗେ ସାଙ୍ଗେ ଆଉ ଜଣେ ଟୋକା କେଉଁଆଡ଼ୁ,
ଧାଇଁ ଆସି ଧରୁଁ ଧରୁଁ ମଞ୍ଜରି ଦେବୀଙ୍କୁ,
ବସିଗଲା ଗୁଳି ତା'ର ବାଆଁ ପଞ୍ଜରାରେ
ପଡ଼ିଲା ସେ 'ଆହା' ବୋଲି କହିଦେଇ ଥରେ ।
ମାତ୍ର ମୁଁ ଦେବୀଙ୍କ କଥା ନଠେଲିଲି ଟିପେ,
ବସି ମୁଁ ରହିଲି ଠାଆ ନଛୁଡ଼ିଲି କେବେଁ ।
ପ୍ରଭୁଙ୍କୁ ସୁମରି ସେଠି ରହିଥାଏଁ ବସି,
ଆଖି କାନ ବୁଦ୍ଧି ମୋର ନ ଥାନ୍ତି ମୋହଠିଁ ।
ନ ଦଶିଲା କିଛି ଶୁଣି ନ ପାରିଲି କିଛି,
ନ ପାରିଲି ବୁଝି ସେଠି ଘଟୁଛି କଅଣ ।
ଧୀରେ ଧୀରେ ସବୁ ଶାନ୍ତ ହୋଇଗଲା ତହୁଁ,
ବହିଗଲା ପରେ ଝଡ଼ ବଡ଼ ତୋଫା ପରି,
ଦେଖିଲି ବହୁତ ଗଛ ପଡ଼ିଛି ଉପୂଡ଼ି ।
ଶବମୟ ସଭାସ୍ଥଳ ବସିଛି ମୁଁ ଏକା ।
ଆସୁଛନ୍ତି ଧୀରେ ଧୀରେ ବିଜୟ କୁମାର
ସଙ୍ଗେ ନେଇ ଦୁରଗୁର ଫଉଜ ସିପାହୀ ।
ଦୂରରୁ ଅନାଇଁ ଦେଖେଁ ପ୍ରାୟ ଶହେ ଲୋକ

ଢୋଉଛନ୍ତି ବନ୍ଧା, ତାଙ୍କୁ ଘେରିଛନ୍ତି ସୈନ୍ୟ ।
ଶୁଣିଲି ମୁଁ ପରେ ସେହି ବନ୍ଧାହୋଇଲା ଲୋକ,
ଯାଉଥିଲେ କାଲେ ମାରିଦେବାକୁ ବିଜୟେ ।
ଆସିଲେ ବିଜୟ ଯହିଁ ପଡ଼ିଥିଲେ ଦେବୀ,
ଗୁହିଁଲେ ନାଠେଇ ଯଣେ ନଇଁ ପଡ଼ି ଟିକେ ।
ଉଠିଲେ ଚମକି ପୁଣି ଗୁହିଁ ଏଣେ ତେଣେ,
ଘନ ଘନ ଶ୍ୱାସ ମାରି ବସିଗଲେ ତଳେ ।
ଲାଗିଲା ଖଟକା ମୋତେ, କପାଇଁ ହାକିମ,
ବସିଗଲେ ମୁହଁ ତାଙ୍କ ଦଶିଲା ଶୁଖିଲା ।
ଗଲି ମୁଁ ପାଖକୁ ଧୀରେ ଗୁହିଁଲି ଦେବୀଙ୍କୁ,
ଦେଖିଲି ସେ ସେହିପରି ହସ ହସ ମୁହଁ ।
ପଡ଼ିଛି କି ଖସି ସତେ ସଜ ଫୁଲଟିଏ,
ଛିଣ୍ଡାଇ ଦେଉଛି ତେଣ୍ଟ କେହି ଅରସିକ ।
ଧରିତାଙ୍କୁ କୋଳେ ସେହି ଜଣକ ପୁରୁଷ
ପଡ଼ିଛି, ସତେକି କିଛି କହେ ତାଙ୍କ କାନେ,
ଦିଶୁଥିଲେ ଦୁହେଁଯାକ ସତେକି ଜୀବନ୍ତ,
କୋଳାକୋଳି ହୋଇଛନ୍ତି ଅତି ପ୍ରେମ ଭରେ,
ମଲା ଭୁଅଁରକୁ ଆଣି ଛଡ଼ାଫୁଲ ଠାରେ
କେଜାଣେ କାହିଁକି ବିଧି କରିଲା ଏକାଠି ।
ତା' ପରେ ବିଜୟ ଉଚ୍ଛେ ପକାଇଲେ କାନ୍ଦ,
'ହାୟରେ ମିହିର', କହି ହେଲେ ଅଚେତନ ।

# ବିଜୟକୁମାର ଓ ତାରା

ତାରା—ଏହି ଦେଖ ବହୁଦୂରେ ଦିଗ୍‌ବଳୟ ପାଶେ,
ଅଙ୍ଗୁଳି ସଙ୍କେତ କରେ ଅନ୍ଧାର ଉହାଡ଼େ,
ଥରେ ଥରେ ଦଶିଯାଏ ତା ସୁନ୍ଦର ମୁହଁ ।
ସେହିତ ମିହିର ମୋର ମିହିର ମିହିର !!
କହ ବାପା କ କହୁଛ କହ ମୁଁ ଶୁଣିବି,
ନ ଦେବି ମୁଁ ଠେଲି ଆଉ ତୋହ କୁହା ଏବେ ।
ଧର ଧୈର୍ଯ୍ୟ ହୁଅ ଶାନ୍ତ ଗୁହାଁ ମୋତେ ଥରେ ।

ବିଜୟକୁମାର—

ନ ଶୁଣଇ କଣ୍ଠ ମୋର ଉନ୍ମାଦିନୀ ତାରା ।

ତାରା—ଶୁଣ ଶୁଣ କହେ କଣ ମିହିର ସୁଦୂରେ,
ଭଲ କରି କହ, ବାପା ଶୁଭୁନାହିଁ ପରା ।

ବିଜୟକୁମାର—

କାହିଁ କେଉଁଣେ କେହି ନାହିଁ ଏ ତୁମ ଉନ୍ମାଦ,
ଧୈର୍ଯ୍ୟଧର ପ୍ରାୟଶ୍ଚିତ୍ତ କରେଁ ମୁଁ ଘୋଷଣା ।

ତାରା—କେହିନାହିଁ ? ସଫା ଦିଶେ ମିହିର ଚେହେରା,
ସେହିପରି ହସ ହସ ସେହିପରି କଣ୍ଠ ।
ବାମ ପାଶେ ଉଭା ଏକ ତରୁଣୀ ବାଳିକା,
ଅଳପ ହସୁଛି ଗୁହିଁ ଆମରି ଏଆଡ଼େ ।
ଶୁଣ ଶୁଣ, କହେ କଣ, ଶୁଭୁନାହିଁ ବାପା,
ପାଟିକରି କହ ଶୁଣେ, ଜାଣେ ମନ କଥା ।

ନ ବନ୍ଧ ସବନ ଭଲ୍ଲ ରହୁଯା' ଟିକଏ,
ଦେଏନାଁ ବୁଡ଼ାଇ କଥା ସୁନୁ ସୁନୁ ସ୍ୱନେ ।

ବଜୟକୁମାର—
ପାଗଳାମି, କାହିଁ କେଉଁଣେ କେହୁତ ନ ଦଶେ,
ଅଛନ୍ତୁକ ମିହୁର ଆଜ ଦେଖା ଦେବ ଆସି ?
ଯାଇଛନ୍ତି ସେ ସାଙ୍ଗ ଖୋଜ ଦେବଗଣ ସଙ୍ଗେ ।
ପ୍ରହ୍ଲାଦ ସେ ଦୈତ୍ୟକୁଳେ ସ୍ୱର୍ଗର ଦେବତା,
ଭ୍ରମକ୍ରମେ ଆସିଥିଲ୍ଲ ରାକ୍ଷସ କୁଳକୁ ।

ତାସ—ଶୁଣ ଶୁଣ କହୁଛନ୍ତି ସେ ବନ୍ଦକର କଥା,
ଏହୁଥର ଶୁଣିବ ମୁଁ କହୁଲ୍ଲ ସେ ଯାହା ।
ଶୁଣିଛି ମୁଁ ଭଲକର ମାନଲ୍ଲ ମୋ ମନ,
ଶୁଭିଲ୍ଲ ମିହୁର ଯାହା କହୁଲ, ଶୁଣିଲ ।
ଶୁଣିଲ କହୁଲେ ଯାହା ମିହୁର ଆମକୁ ?
ପଶିଲ୍ଲ ସେ କଥା କାନେ, ବୁଝିଲତ ତାହା ?

ବଜୟ—ଏକେତ ବଦୀର୍ଣ୍ଣ ମୋର ପିତାର ହୃଦୟ,
ନ କର ଦହନ ତାଙ୍କୁ ପୁଣି ଏ ଉନ୍ମାଦେ ।

ତାସ—ଶୁଣିଛତ କହୁଲ୍ଲ ଯା' ମିହୁର ତୁମଙ୍କୁ,
ଜୀବନେ ଅଶୁଣା ଯାହା ଶୁଣ ତା' ମରଣେ ।
କହୁଛନ୍ତି ସେ ସାଠିକର ଶୁଣ ଭଲକର,
ବଦେଶୀ ଦାସତ୍ୱ ଛାଡ଼ ସ୍ୱଦେଶୀ କଲ୍ୟାଣେ,
ଆସୁଛନ୍ତି ସେ କଥା ବହୁ ଦରିଦ୍ର ନିଶ୍ୱାସେ,
ମିଶିହୋଇ ଦେଶବ୍ୟାପି ହାହାକାର ରବେ ।

ବଜୟକୁମାର—
ଶୁଣିନାହିଁ କଥା ସତ ବଞ୍ଚିଥିଲ୍ଲ ଯେବେ,
ଝୁରିହେବ ତା' ମରଣ ତାହା କଥା ମାନି ।

ପିତା ଏହାଇ ନିଜ ହସ୍ତେ କରି ପୁତ୍ର ବଧ
ହେବକି ପ୍ରାୟଶ୍ଚିତ୍ତ ଖାଲି ଦାସତ୍ୱ ବନ୍ଧନେ ?
ଦୈର୍ଯ୍ୟଧର ଶୁଣାଏ ମୁଁ ସେହି ପ୍ରାୟଶ୍ଚିତ୍ତ,
ଲୋଡ଼ା ଯାହା ଦେଶ ଦ୍ରୋହୀ ପୁତ୍ରହନ୍ତା ପକ୍ଷେ ।
ଅର୍ଜିଛି ଯେତକ ଧନ ଦେବି ମୁଁ ଫେରାଇ,
ମୋ ଦେଶବାସୀଙ୍କୁ, ଅଟେ ଯାହାଙ୍କ ସେ ଧନ,
ସନ୍ନ୍ୟାସୀ ଦର୍ଶିତ ମାର୍ଗେ ଚଲାଇ ନିଜକୁ,
କରିବି ମୁଁ ଆତ୍ମଦାନ ଦେଶ ମୁକ୍ତି ପାଇଁ ।
କାଳେ କାଳେ ରହୁ କଥା ପୁତ୍ରହନ୍ତା ପିତା,
ପର ପାଇଁ ଦେଶ ଦ୍ରୋହ କରି ଆଜୀବନ,
ଅବଶେଷେ ହେଲା ସେହି ପୁତ୍ର ଅନୁଗାମୀ
ଆତ୍ମରକ୍ଷା ହାହାକାର କରି ଅନୁତାପେ ।
ତାପ୍—ଶୁଣ ଶୁଣ ପୁଣି କସ କହେ ସେ ମିହିର,
ଏଥର ବିପନ୍ନ ମୁହଁ ଦିଶୁଛି ତାହାର,
ଶଙ୍କିତ କହୁଛି ସେ ବଦନ ଶୁଣାଇ,
ଗମ୍ଭୀର ବିଷାଦ ବାଣୀ ଅଶ୍ରୁ ପୂର୍ଣ୍ଣ କଣ୍ଠେ ।
କହୁଛି ସେ, କହିଯିବ ଯୁଗ ଯୁଗ କେତେ,
ନ ହେବଟି ଭବିଷ୍ୟତ କେବେ ହେଲେ କ୍ଷମା,
ବିଦେଶୀ ସହାୟ ଯାଙ୍କୁ, ସ୍ୱାର୍ଥେ ମାତ୍ର ମୋହୁ,
ହେଲେ ଦାସୀ ଏତେକାଳ ସ୍ୱଦେଶ ବନ୍ଧନେ !
ଶୁଣ ଶୁଣ ପୁଣି କହେ ସେହି ସେ ବାଳକା,
ହସି ହସି ଛୁଡ଼ାହୋଇ ପାଶେ ମିହିରର—
'ମରିବା ଜାଣଇ ଯେହୁ ବଞ୍ଚି ଜାଣେ ସେହି,
'ଆତ୍ମଦାନ, ଆତ୍ମଦାନ ମୁକ୍ତିର ଉପାୟ ।'

ଲୁଚିଗଲୁ କାହିଁ ପୁଅ ଥିଲୁତ ଏଷଣି,
ଦେଖୁଥିଲୁ କହୁଥିଲୁ ଶୁଣୁଥିଲୁ କଥା ।
କଳାମେଘ ଖଣ୍ଡପଛେ ଲୁଚିଗଲୁ କାହିଁ,
ଆଉ ତ ନ ଦେଖେ ତୋର ସେ ସୁନ୍ଦର ମୁହଁ,
ଗଲୁ କାହିଁ ଛାଡ଼ିଦେଇ ଅଭାଗିନୀ ମୋତେ,
ମାଆ ପରି କରୁଥିଲି ତୋତେ କେତେ ସ୍ନେହ ।
କାହିଁ ଗଲୁ କହ କଥା ମେଘ ପଛୁଁ ଥରେ,
ଶୁଣି ତୋ ବଚନ ଧରେଁ ଏ ଛାର ଜୀବନ ।
ଶୁଭିଲା ଶୁଭିଲା ଡାକ ଶୁଭିଲା ଏଥର
ଶେଷଥର ପାଇଁ କହୁ ମେଘ ପଛ ଆଉ,
ଶୁଭିଲା କହୁଛୁ "ମାତା ଆସ ମୋ ପାଖକୁ ।"
'ପୁଅ ତୋହୁ ନେଇ ଘର କର ଏ ଆକାଶେ ।"
ଶୁଭିଲା ଶୁଭିଲା ରହ ଯାଉଛୁ ଏଷଣି,
ଅଳପ ଅପେକ୍ଷା କର ଉଡ଼ିଲି ମୁଁ ଏହି ।      (ମୂର୍ଚ୍ଛା)

ବିଜୟକୁମାର—

ମୂର୍ଚ୍ଛାଗଲା ଅବଶେଷେ ଉନ୍ମାଦିନୀ ତାରା,
ନୁହେଁ ତ ଏ ଚିର ମୂର୍ଚ୍ଛା ପୂର୍ବାଭାସ ମାତ୍ର ?
ଚାଲିଗଲେ ଛାଡ଼ି ସବୁ ରହିଲି ଏକାକୀ,
ବର୍ଜିତ କି ଏହାପରି ହୁଏ ଦେଶଦ୍ରୋହୀ ?
ଆଗେ ମାଆ ପରେ ପରେ ଯିବି ମୁଁ ଗୋଡ଼ାଇ,
'କ୍ଷମାକର, କରୁଛି ମୁଁ ଅନୁତାପ' କହି ।

— — —